ଭାରତ ପ୍ରଦୀପ

# ବୁଦ୍ଧଦେବ

ଭଗୀରଥି ନେପାକ

ସୁଧାଂଶୁ ପ୍ରକାଶନ

ଝାଞ୍ଜିରୀମଙ୍ଗଳା, କଟକ-୯

# ଭାରତ ପ୍ରଦୀପ-ବୁଦ୍ଧଦେବ

ଲେଖକ

**ଶ୍ରୀ ଭଗୀରଥି ନେପାକ**

ପ୍ରକାଶକ

**ସୁଧାଂଶୁ ପ୍ରକାଶନ**

କଟକ-୯

ପରିବେଷକ :

**ଶ୍ରୀ ନିବାସ ଗୁରୁ**

ଗୁରୁଜୀ ବୁକ୍‌ଷ୍ଟଲ

କଟକ-୯

ରଙ୍ଗତୁଳୀ

**ସୁନାମଣୀ ସାମଲ**

ପ୍ରଥମ ପ୍ରକାଶ ୧୯୮୫

ମୁଦ୍ରଣ

**ଭଗବତୀ ପ୍ରିଣ୍ଟର୍ସ**

ସଜାବଗିଚ୍ଚ, କଟକ-୯

ମୂଲ୍ୟ : **ଟ. ୩-୦୦**

# ବୁଦ୍ଧଦେବ

ଯିଶୁଖ୍ରୀଷ୍ଟ ଜନ୍ମ ହେବାର ଛ'ଶହ ବର୍ଷ ପୂର୍ବର କଥା—ସେତେବେଳେ ବୈଦିକ ଧର୍ମ ଜଟିଳ ହୋଇଯାଇଥିଲା । ଧର୍ମ ନାମରେ ଅନ୍ଧବିଶ୍ୱାସ ଓ କୁସଂସ୍କାର ଚାଲିଥିଲା । ଯଜ୍ଞରେ ନାନା ପ୍ରକାର ଜୀବ ବଳି ପଡିଲେ । ପଶୁ ହତ୍ୟା ପ୍ରବଳ ହେଲା । ଧର୍ମ କାର୍ଯ୍ୟ ପାଇଁ ପୁରୋହିତମାନଙ୍କୁ ବରଣ କରାଗଲା । ପୁରୋହିତମାନେ ସ୍ୱାର୍ଥପର ମନ୍ତ୍ର ଧରି ଲୋକମାନଙ୍କୁ ନାନାମତେ ଶୋଷଣ କଲେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରିଜାତିରୁ ଆହୁରି ଅନେକ ଜାତି ଓ ଉପଜାତି ସୃଷ୍ଟି ହେଲେ । ଉଚ୍ଚଜାତିର ଲୋକମାନେ ତଳ ଜାତିର ଲୋକଙ୍କୁ ଘୃଣା କରିବାକୁ ଲାଗିଲେ । ଜାତିପ୍ରଥା ଅତି କଠୋର ହେଲା । ଲୋକେ ପ୍ରକୃତ ଧର୍ମମାର୍ଗ ଭୁଲି ଅଧର୍ମ ଆଚରଣ କଲେ ।

ଧର୍ମ ଓ ସମାଜର ଏହିପରି ଅଧୋଗତି ବେଳେ, ଏହାର ସଂସ୍କାର ପାଇଁ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ସେହି ସଂସ୍କାର-ମୂଳକ ଆନ୍ଦୋଳନ ଓ ଆନ୍ଦୋଳନ ମଧ୍ୟରୁ ଜୈନଧର୍ମ ଓ ବୌଦ୍ଧ ଧର୍ମର ଉତ୍ପତ୍ତି ଘଟିଥିଲା ।

ବୌଦ୍ଧ ଧର୍ମର ପ୍ରତିଷ୍ଠାତା ରୂପେ ଗୌତମ ବୁଦ୍ଧ ବିଶ୍ୱ ଖ୍ୟାତି ଲାଭ କରି ଅଛନ୍ତି ।

## ଗୌତମ ବୁଦ୍ଧଙ୍କ ସଂକ୍ଷିପ୍ତ ଜୀବନୀ

ହିମାଳୟର ପାଦଦେଶରେ ଅବସ୍ଥିତ ନେପାଳର ତରାଇ ଅଞ୍ଚଳରେ 'କପିଳବାସ୍ତୁ' ନାମରେ ଏକ କ୍ଷୁଦ୍ର ରାଜ୍ୟ ଥିଲା ।

ସେଠାରେ କ୍ଷତ୍ରୀୟ ବଂଶର ଲୋକେ ବାସ କରୁଥିଲେ । ସେମାନଙ୍କୁ ଶାକ୍ୟ ବଂଶ କୁହାଯାଉଥିଲା । ସେମାନେ ଯୁଦ୍ଧ କରିବାରେ ପାରଙ୍ଗମ ଥିଲେ । ଶିକାର କରିବା ସେମାନଙ୍କ ପେଷା ଥିଲା ।

କପିଳବାସ୍ତୁ ନିକଟରେ ଲୁମ୍ବିନୀ ନାମକ ଏକ ଉଦ୍ୟାନ ଥିଲା । ବୁଦ୍ଧଦେବ ଏହି ଲୁମ୍ବିନୀ ଉଦ୍ୟାନରେ ଜନ୍ମଗ୍ରହଣ କରିଥିଲେ ।

ବୁଦ୍ଧଦେବଙ୍କ ପିତାଙ୍କ ନାମ ଶୁଦ୍ଧୋଦନ । ସେ କପିଳବାସ୍ତୁର ରାଜା ଥିଲେ । ବୁଦ୍ଧଦେବଙ୍କ ମାତାଙ୍କ ନାମ ମାୟାଦେବୀ । ପୁତ୍ରକୁ ଜନ୍ମ ଦେବା ପରେ ପରେ ଅଳ୍ପଦିନରେ ହିଁ ମାତା ମାୟାଦେବୀଙ୍କର ମୃତ୍ୟୁ ଘଟିଥିଲା । ତେଣୁ ମାଉସୀ ଗୌତମୀ ବୁଦ୍ଧଦେବଙ୍କର ଲାଳନ ପାଳନ କରିଥିଲେ । ଗୌତମୀଙ୍କ ନାମ ଅନୁସାରେ ଶିଶୁର ନାମ ରଖାଗଲା ଗୌତମ । ଗୌତମଙ୍କୁ ସିଦ୍ଧାର୍ଥ ବୋଲି ମଧ୍ୟ ଡକା ଯାଉଥିଲା ।

ଗୌତମ ରାଜପୁତ୍ର ରୂପେ ଜନ୍ମଗ୍ରହଣ କରିଥିଲେ ହେଁ ରାଜପୁତ୍ରମାନଙ୍କ ପରି ଆନନ୍ଦ ଉତ୍ସବ ମଉଜ ମଜଲିସ୍‌ରେ ଦିନ କଟାଇବାକୁ ଭଲ ପାଉ ନ ଥିଲେ । ତାଙ୍କ ମନରେ ବାଲ୍ୟ ଚପଳତା ପରିବର୍ତ୍ତେ ବୟସ୍କ ଲୋକର ଚିନ୍ତାଧାରା ପ୍ରକାଶ ପାଉଥିଲା । ମଉଜ ମଜଲିସ୍, ହସ କୌତୁକ ପ୍ରତି ସେ ଜମାରୁ ଆକୃଷ୍ଟ ନ ଥିଲେ । ସେ ନିରୋଳାରେ ଏକୁଟିଆ ବସି ବିଭିନ୍ନ ବିଷୟରେ ଚିନ୍ତା କରିବାକୁ ଖୁବ୍ ଭଲ ପାଉଥିଲେ ।

ପୁତ୍ରର ମତିଗତି ଦେଖି ପିତା ଶୁଦ୍ଧୋଦନ ଚିନ୍ତାରେ ପଡ଼ିଗଲେ । ସେ ଭାବିଲେ, ପିଲାଟିକୁ ରାଜପୁତ୍ର ବୟସ୍କମାନଙ୍କ ପରି

ଚିନ୍ତାଶୀଳ ହେବା ଉଚିତ ନୁହେଁ । ସେଭଳି ହେଲେ ସେ ହୁଏତ ରାଜସିଂହାସନ ଚଳାଇ ପାରିବେ ନାହିଁ । ଫଳରେ ରାଜଧର୍ମ ପାଳନରେ ବାଧା ଆସିବ । ପୁତ୍ରର ମତିଗତିରେ ପରିବର୍ତ୍ତନ ପାଇଁ ଅନେକ ଚେଷ୍ଟା କରାଗଲା । କିନ୍ତୁ କାହିଁରେ ହେଲେ ତାଙ୍କର ପରିବର୍ତ୍ତନ ହେଲା ନାହିଁ । ଶେଷରେ ବୁଦ୍ଧଦେବଙ୍କୁ ସଂସାର ଆଡ଼କୁ ଆଣିବାକୁ ତାଙ୍କୁ ଯଶୋଧାରା ନାମରେ ଏକ ସୁନ୍ଦରୀ କନ୍ୟା ସାଙ୍ଗରେ ବିବାହ କରି ଦିଆଗଲା ।

ଯଶୋଧାରାଙ୍କ ଅନ୍ୟ ନାମ ଥିଲା 'ଗୋପା' । ସେ କେବଳ ରୂପରେ ନୁହେଁ ଗୁଣରେ ମଧ୍ୟ ଅନୁପମା ଥିଲେ ।

ବୁଦ୍ଧଦେବ ଯଶୋଧାରାଙ୍କୁ ଯେତେବେଳେ ବିବାହ କଲେ, ସେତେବେଳେ ତାଙ୍କର ବୟସ ହୋଇଥିଲା ମାତ୍ର ଷୋହଳ ବର୍ଷ ବୟସ । ଏ ବୟସ ସାଙ୍ଗସାଥି ମେଳରେ ଖେଳିବାର, ଗପ କରିବାର ବୟସ । ତଥାପି ବୁଦ୍ଧଦେବଙ୍କୁ ଗୃହସ୍ଥ ହେବାକୁ ପଡ଼ିଲା ।

ପ୍ରଥମେ କିଛିଦିନ ଆନନ୍ଦରେ କଟିଯିବା ପରେ, ବୁଦ୍ଧଦେବଙ୍କ ମନରେ ପୁଣି ଥରେ ବୈରାଗ୍ୟ ଦେଖାଦେଲା । ସାଂସାରିକ ସୁଖ ତାଙ୍କୁ ଧରି ରଖି ପାରିଲା ନାହିଁ । ସେ ପୁଣି ଥରେ ଏକୁଟିଆ ବସି ବସି ଚିନ୍ତାମଗ୍ନ ରହିଲେ ।

କୁହାଯାଏ, ବୁଦ୍ଧଦେବ ବୁଲିଗଲା ବେଳେ ନିମ୍ନଲିଖିତ ଘଟଣା-ମାନ ଦେଖି ସଂସାର ପ୍ରତି ବିମୁଖ ହୋଇଥିଲେ ।

ପ୍ରଥମେ ସେ ବୟସର ଆଧିକ୍ୟରେ ଜରାଗ୍ରସ୍ତ ଲୋକଟିକୁ ଦେଖିଲେ । ସେ ହାତରେ କାଡ଼ଧରି ନଇଁ ନଇଁ ବୁଲୁଥିଲା । ଠିକ୍ ଏ

ବାଟ ଚାଲିବା ପରେ କ୍ଳାନ୍ତ ହୋଇ ବସି ପଡୁଥିଲା । ସେ ଜାଣିଲେ ତାକୁ ମଧ୍ୟ ଦିନେ ଏହିପରି ନଇଁ ନଇଁ ଚାଲିବାକୁ ପଡ଼ିବ । ସିଧା ହୋଇ ଚାଲିବା ପାଇଁ ଅଣ୍ଟାରେ ବଳ ନ ଥିବ ।

ଆଉ ଦିନେ ସେ ଦେଖିଲେ, ଲୋକଟିଏ ରୋଗ ହେତୁ କଷ୍ଟ ଭୋଗ କରୁଛି । କଷ୍ଟ ବଳେଇ ପଡ଼ିବାରୁ କାନ୍ଦୁଛି । ଦୁଇ ଆଖିରୁ ଲୁହ ଗଡ଼ୁଛି । ବୁଦ୍ଧଦେବ ପଚାରି ବୁଝିଲେ, ଦେହ ଥିଲେ ରୋଗ ଅଛି । ସମସ୍ତଙ୍କୁ କିଛି ନା କିଛି ରୋଗ ଭୋଗିବାକୁ ପଡେ ।

ଏହା ପରେ ପରେ ସେ ବାଟରେ ଏକ ମୃତଦେହ ଦେଖିବାକୁ ପାଇଲେ । ମୃତ ବ୍ୟକ୍ତିଙ୍କୁ ତାର ଆପଣାର ଲୋକମାନେ କୋକେଇରେ ଥୋଇ ଶ୍ମଶାନକୁ ନେଉଥିଲେ । ଏହା ଦେଖି ବୁଦ୍ଧଦେବ ବୁଝିଗଲେ, ମଣିଷକୁ ଦିନେ ନା ଦିନେ ମରିବାକୁ ପଡିବ । ପୃଥିବୀରେ କୌଣସି ପ୍ରାଣୀ ଅମର ନୁହେଁ । ମୃତ୍ୟୁ ହେଉଛି ତାର ଶେଷ ପରିଣାମ । ରାଜପୁତ୍ର ଓ ଭିକ୍ଷୁକ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ରାଜପୁତ୍ର ବୋଲି ମୃତ୍ୟୁ ଛାଡ଼ିବ ନାହିଁ ।

ଏହି ଜରା, ବ୍ୟାଧି ଓ ମୃତ୍ୟୁ କଥା ଭାବିଭାବି ବୁଦ୍ଧଦେବ ବିଚଳିତ ହେଲେ । ସେ ମନକୁ ମନ ପ୍ରଶ୍ନ କଲେ, ଜୀବର ଶେଷ ପରିଣାମ ଯଦି ମୃତ୍ୟୁ, ତାହାହେଲେ ଏ ପୃଥିବୀରେ ଆନନ୍ଦ କାହିଁ ? ମଣିଷ କାହିଁକି ବା ଆନନ୍ଦ କରିବ ।

ଅବଶେଷରେ ବୁଦ୍ଧଦେବ ରାସ୍ତାରେ ଯାଉ ଯାଉ ଏକ ସନ୍ନ୍ୟାସୀଙ୍କୁ ଦେଖିଲେ । ତାଙ୍କର ସ୍ୱାସ୍ଥ୍ୟ ସୁନ୍ଦର ଥିଲା । ମୁହଁରେ ହସ ଭରିଥିଲା । ସେ ପଚାରି ବୁଝିଲେ ଉକ୍ତ ବ୍ୟକ୍ତି ଘର ସଂସାର

ତ୍ୟାଗ କରି ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଛନ୍ତି । କୌଣସି ବିଷୟରେ ତାଙ୍କର ଲୋଭ ନାହିଁ ।

ସମଗ୍ର ପୃଥିବୀ ତାଙ୍କର ଘର । ସମସ୍ତ ପ୍ରାଣୀ ତାଙ୍କର ଆପଣାର । ତାଙ୍କ ଆଖିରେ ବଡ଼ ସାନ ସମସ୍ତେ ସମାନ । ତେଣୁ ସେ ଆନନ୍ଦରେ କାଳଯାପନ କରୁଛନ୍ତି ।

ସନ୍ନ୍ୟାସୀର ସୌମ୍ୟ ମୂର୍ତ୍ତି ଦେଖିବା ପରେ ତାଙ୍କର ମନେ ହେଲା, ସେ ସୁଖର ସନ୍ଧାନ ପାଇଛନ୍ତି ।

୨୯ ବର୍ଷ ବୟସରେ ଗୌତମ ଏକ ପୁତ୍ର ଲାଭ କଲେ । ପିତା ହେବାର ଗୌରବ କିନ୍ତୁ ତାଙ୍କୁ ଆନନ୍ଦ ଦାନ କରି ପାରିଲା ନାହିଁ । ସେ ମନେ ମନେ ଭାବିଲେ, ପୁତ୍ର ନୁହେଁ ସେ ଜଞ୍ଜାଳ ଆସିଛି । ଏଣିକି ତାଙ୍କୁ ନୂତନ ଧରଣର ମାୟା ବନ୍ଧନରେ ବାନ୍ଧି ହେବାକୁ ପଡ଼ିବ । ପତ୍ନୀ ଏବଂ ପୁତ୍ର ତାଙ୍କୁ ଦୁଇପଟୁ ଭିଡ଼ି ଧରିବେ ।

ବୁଦ୍ଧଦେବ ସ୍ଥିର କଲେ, ଏଣିକି ଗୃହ ଜଞ୍ଜାଳରୁ ନିଜକୁ ମୁକ୍ତ ନ କଲେ ନ ଚଳେ । ଯେତେ ଶୀଘ୍ର ପାରନ୍ତି ଘର ଛାଡ଼ି ଚାଲି-ଯିବେ । ଜରା-ବ୍ୟାଧି-ମୃତ୍ୟୁ ଗ୍ରସ୍ତ ସଂସାରର ଜୀବମାନଙ୍କୁ ମୁକ୍ତିର ସନ୍ଧାନ ଦେବେ ।

ଦିନେ ଏକ ଗଭୀର ରାତିରେ ସ୍ତ୍ରୀ ପୁତ୍ର ଶୋଇ ରହିଥିଲାବେଳେ ସେ ରାଜପ୍ରସାଦ ଛାଡ଼ି ଚାଲିଗଲେ । ସ୍ତ୍ରୀ ପୁତ୍ର ଭୋଗ ବିଳାସ, ରାଜସିଂହାସନ ପ୍ରଭୃତି ମାୟାବନ୍ଧନ ତାଙ୍କୁ ଧରି ରଖିପାରିଲା ନାହିଁ ।

## ପତ୍ନୀପୁତ୍ର ପରିତ୍ୟାଗ

ସେ ଦିନର ସେହି ନୀରବ ରାତ୍ରୀ କୋଳରେ ଯଶୋଧାରା ଗଭୀର ନିଦ୍ରାରେ ନିମଗ୍ନା ଥିଲେ ।

ଶିଶୁପୁତ୍ର ରାହୁଲ ମାତାର ବକ୍ଷରେ ମଥା ରଖି ନୀରବରେ ଶୋଇ ଯାଇଥିଲା ।

ଗୌତମ ସେହି ମାତାପୁତ୍ରଙ୍କର ବିଛଣା ପାଖରେ ଦଣ୍ଡେ ଛିଡ଼ା ହୋଇ ରହିଲେ ।

ସକାଳ ପାହିଲେ ଯଶୋଧାରା ଓ ରାହୁଲ ତାଙ୍କୁ ଖୋଜ-ହେବେ । ଯଶୋଧାରା ନୀରବରେ କାନ୍ଦିବେ । ରାହୁଲ ପଚାରିବେ, ପିତା କୁଆଡ଼େ ଗଲେ ? ଯଶୋଧାରା ତାଙ୍କୁ ବକ୍ଷରେ ଚାପିଧରି ସାନ୍ତ୍ୱନା ଦେଇ କହିବେ, ବ୍ୟସ୍ତ ହୁଅନା । ପିତା ତୋର ଫେରି ଆସିବେ । ସେ ଦୃଶ୍ୟ ଅତ୍ୟନ୍ତ କରୁଣ ହେବ ।

କିନ୍ତୁ ନାଁ ଏହାପରେ ଜରା, ବ୍ୟାଧି ଓ ମୃତ୍ୟୁ ! ମଣିଷ ଦିନେ ନା ଦିନେ ମୃତ୍ୟୁର ସମ୍ମୁଖୀନ ହେବ, ଏ କଥା ଜାଣି ମଧ୍ୟ ସଂସାର ପ୍ରତି ଆକୃଷ୍ଟ ହୁଏ କିପରି ? କଣ ମିଳେ ଏଥିରୁ ?

ସେ ଶେଷ ଥର ପାଇଁ ପୁତ୍ର ରାହୁଲ ଓ ପତ୍ନୀ ଯଶୋଧାରା ଆଡ଼କୁ ଥରେ ଚାହିଁଲେ । ତାପରେ ନିଜକୁ ସଂଯତ କରି ସବୁ କଥା ଭୁଲି ରାଜ ଉଆସ ଛାଡ଼ି ଚାଲିଗଲେ ।

ସେହି ନିଶାର୍ଦ୍ଧରେ ଯାଇ ସେ ସାରଥିକୁ ଉଠାଇଲେ ଓ ରଥ ପ୍ରସ୍ତୁତ କରିବାକୁ କହିଲେ ।

ସାରଥି ଭାବିଲା, ରାଜକୁମାର ଜ୍ୟୋତ୍ସ୍ନା ରାତ୍ରୀ ଉପଭୋଗ ପାଇଁ ମନ ବଳାଇଛନ୍ତି । ସେ ସବୁଠୁ ସୁନ୍ଦର ଘୋଡ଼ା ବାଛାରି କରି

ରଥ ପ୍ରସ୍ତୁତ କଲା । ଏହାପରେ ସିଦ୍ଧାର୍ଥ ଓ ସାରଥି ରାଜନଗର ଓ ଜନବସତି ଛାଡ଼ି ଆଗକୁ ଆଗକୁ ବଢ଼ିବାକୁ ଲାଗିଲେ । ସେମାନେ କ୍ରମେ ଜନବସତି ଛାଡ଼ି ବହୁଦୂରକୁ ଚାଲିଗଲେ ।

ସିଦ୍ଧାର୍ଥଙ୍କ ମନ ସ୍ଥିର ଓ ଦୃଢ ହୋଇ ସାରଥିଙ୍କ ।
ସେ ଦୁହେଁ କ୍ରମେ ଘନ ଅରଣ୍ୟ ମଧ୍ୟରେ ପ୍ରବେଶ କଲେ ।

## ସିଦ୍ଧାର୍ଥଙ୍କ ଭିକାରିବେଶ

ସିଦ୍ଧାର୍ଥ ରଥ ଉପରୁ ଓହ୍ଲାଇ ପଡି ସାରଥି ପାଖରେ ମନର ସବୁ କଥା ପ୍ରକାଶ କଲେ । ସେଇଠି ସେ ନିଜର ତରବାରିରେ ମସ୍ତକର ସୁଶୋଭିତ କେଶ ଗୁଚ୍ଛକୁ ନିଜ ହସ୍ତରେ କାଟି ପକାଇଲେ । ତାପରେ ରାଜପୋଷାକ ଓ ତରବାରି ନେଇ ସାରଥି ହସ୍ତରେ ଅର୍ପଣ କଲେ । ସାରଥି ପାଖରୁ ଏକ ସାଧାରଣ ବସ୍ତ୍ର ନେଇ ନିଜେ ପରିଧାନ କଲେ । ଏହାପରେ ସାରଥି ପାଖରୁ ବିଦାୟ ନେଇ ଯିବା ସମୟରେ ତାର ହାତ ଧରି କହିଲେ, ତୁମେ ଫେରି ଯାଇ ପିତାଙ୍କୁ ମୋର ନମସ୍କାର ଜଣାଇବ ଏବଂ କହିବ, "ସମଗ୍ର ବିଶ୍ୱରେ ପରିବର୍ତ୍ତନ ଆଣିବା ନିମନ୍ତେ ଉଆସ ଛାଡ଼ି ଚାଲିଯାଇଛି । ସେ ପୃଥିବୀର ପ୍ରାଣୀମାନଙ୍କର କଷ୍ଟ ଦୂର କରିବାକୁ ଚାହେଁ । ଏଥିରେ ସଫଳ ହେଲେ ଯାଇ ଫେରି ଆସିବ" ।

ସାରଥି ବୁଦ୍ଧଦେବଙ୍କର ଭିକାରି ବେଶ ଦେଖି ଓ ତାଙ୍କର କଥା ଶୁଣି ଆଶ୍ଚର୍ଯ୍ୟ ହେଲା । ସେ କଣ ଭାବି ଆସିଥିଲା । ଆଉ କଣ ସବୁ ଘଟିଗଲା । ତା ଆଖିରୁ ଧାର ଧାର ହୋଇ ଲୁହ ଝରିବାକୁ ଲାଗିଲା ।

ସିଦ୍ଧାର୍ଥ ପୁଣି କହିଲେ, ସାରଥି ! ବାଲ୍ୟକାଳରୁ ମୁଁ ମାତାଙ୍କୁ ହରାଇଥିଲି । ତୁମେ ମୋତେ କାଖରେ ଧରି କେତେ ବୁଲାଇଛ ।

ମୋତେ ସାନ୍ତ୍ୱନା ସ୍ନେହ ଦାନ କରନ୍ତୁ । ତୁମର ଋଣ ମୁଁ ସୁଝି ପାରିବି ନାହିଁ ।

ସାରଥି କାନ୍ଦ କାନ୍ଦ ହୋଇ କହିଲା, ଏ କଣ କହୁଛ ?

ସିଦ୍ଧାର୍ଥ କହିଲେ, ହଁ ସାରଥି ! ମାୟା ମୋହର ସଂସାର ଗ୍ରସ୍ତ ପ୍ରାଣୀମାନଙ୍କର ଦୁଃଖ ଦୂର କରିବାକୁ ଠିକ୍ କରି ମୁଁ ଯେତେବେଳେ ବିଶାଳ ଧରାରେ ପାଦ ବଢ଼ାଇଲି, ତୁମେହିଁ ମୋତେ ସାହାଯ୍ୟ କରି ନେଇ ଆସିଛ । ତୁମେ ମୋର ସାଧନାର ପ୍ରଥମ ସହଯୋଗୀ ହେଲ । ଏବେ ଘରକୁ ଫେରିଯାଇ ନିଜର କର୍ତ୍ତବ୍ୟ ପାଳନ କର । ଏହା କହି ସିଦ୍ଧାର୍ଥ ସାରଥି କାନ୍ଧରେ ସ୍ନେହର ସ୍ପର୍ଶ ଦେଲେ ଓ ଏକମୁହାଁ ହୋଇ ଘନ ଅରଣ୍ୟ ଆଡକୁ ଚାଲିଗଲେ ।

ସାରଥି ସିଦ୍ଧାର୍ଥ ଆଡ଼କୁ ଏକ ନୟନରେ ଅନେଇ ରହିଥାଏ । ସିଦ୍ଧାର୍ଥ କିନ୍ତୁ ଥରକ ପାଇଁ ହେଲେ ମଧ୍ୟ ପଛକୁ ଫେରି ଚାହିଁଲେ ନାହିଁ । ସେ ଧୀରେ ଧୀରେ ବନ ଭିତରକୁ ଚାଲି ଯାଉଥିଲେ ।

ଏତିକିବେଳେ ବୃକ୍ଷର ଫୁଲମାନ ପବନରେ ତାଙ୍କ ମୁଣ୍ଡ ଉପରେ ପଡ଼ିଲେ । ବୃକ୍ଷ ଶାଖାର ପକ୍ଷୀମାନେ ତାଙ୍କୁ ଚାହିଁବାକୁ ଲାଗିଲେ । ଦୁଇ ଚାରୋଟି ବନ୍ୟହରିଣ ଆସି ସିଦ୍ଧାର୍ଥଙ୍କ ମୁହଁକୁ ଚାହିଁଲେ ଓ କଣ ଭାବି କେଜାଣି ବନ ଭିତରେ ଲୁଚିଗଲେ ।

ସିଦ୍ଧାର୍ଥ କିଛିଦୂର ଯାତ୍ରା କରିବା ପରେ, ରାସ୍ତା ମୁହଁରେ ଏକ ବୁଲଣିଆ ପଥ ପଡ଼ିଲା । ସେ ସେହି ବୁଲଣିଆ ପଥରେ ଚାଲିବାକୁ ଲାଗିଲେ । ସେ ଆଉ ସାରଥିକୁ ଦେଖାଗଲେ ନାହିଁ ।

ସାରଥି ଆଉ କିଛି ସମୟ ପାଇଁ ସେଇଠି ନୀରବରେ ଛିଡ଼ା ହୋଇ ରହିଲା । ତାପରେ ସେ ଶୁଦ୍ଧୋଦନଙ୍କୁ ସମ୍ବାଦ ଦେବା ଉଦ୍ଦେଶ୍ୟରେ କପିଳାବାସ୍ତୁକୁ ଯାତ୍ରା କଲା ।

## ଯଶୋଧାରା ଓ ଶୁଦ୍ଧୋଦନ

ପରଦିନ ରାତି ପାହି ପାହି ଆସୁଥାଏ । କପିଳବାସ୍ତୁ ମୁହଁରୁ ନିଦ ଛାଡ଼ି ନ ଥାଏ । ସାରଥି ସେହି ଶାନ୍ତ ନିର୍ଜନ ପରିବେଶରେ କପିଳବାସ୍ତୁ ଫେରିଲା ।

ଯଶୋଧାରା ବିଛଣା ତ୍ୟାଗ କରିବା ପରେ ସିଦ୍ଧାର୍ଥଙ୍କ ଶୂନ୍ୟ ବିଛଣାକୁ ଦେଖି ଭାବୁଥିଲେ, ସ୍ୱାମୀ ହୁଏତ ପ୍ରାତଃ ଭ୍ରମଣରେ ବାହାରି ଯାଇଛନ୍ତି । ଅଳ୍ପ ସମୟ ପରେ ଫେରି ଆସିବେ ।

ରାଜା ଶୁଦ୍ଧୋଦନ କିନ୍ତୁ ନିଶ୍ଚିନ୍ତରେ ଶୋଇ ଯାଇଥିଲେ । ଭାବୁଥିଲେ ସିଦ୍ଧାର୍ଥ ଏବେ ଶିଶୁ ନୁହେଁ । ସେ ଏବେ ପିତା ହୋଇ ସାରିଛି । ସାଂସାରିକ ଦାୟିତ୍ୱ ବଢ଼ିଛି । କିଛି ବର୍ଷ ପରେ କପିଳବାସ୍ତୁର ଦାୟିତ୍ୱ ବହନ କରିବ । ସେ ଟିକିଏ ଅବସର ଗ୍ରହଣ କରିବେ ।

ଇତ୍ୟବସରରେ ସାରଥି ଶୁଦ୍ଧୋଦନଙ୍କୁ ସାକ୍ଷାତ କରି ସବୁ ବିଷୟ ଜଣାଇଦେଲା ।

ରାଜା ଶୁଦ୍ଧୋଦନ ସାରଥିର କଥା ଶୁଣି ମୂର୍ଚ୍ଛା ହୋଇ ପଡ଼ିଲେ । ସେ କଣ ଭାବୁଥିଲେ, ଆଉ କଣ ହୋଇଗଲା ସତରେ । ମୁଣ୍ଡରେ ଆକାଶଟା ଛିଡ଼ି ପଡ଼ିଲା ପରି ବୋଧ ହେଲା ।

ଯଶୋଧାରା ସମ୍ବାଦ ପାଇ କରୁଣ କଣ୍ଠରେ ବିଳାପ କରିବାକୁ ଲାଗିଲେ । ସମଗ୍ର ରାଜ୍ୟ ଉଆସ ଦୁଃଖ ଜର୍ଜରିତ ହେଲା ।

କିଛି ସମୟ ପରେ ଯଶୋଧାରା ନିଜ ମନକୁ ଦମନ କଲେ । ଆଖିରୁ ଲୁହ ପୋଛି ନିଜକୁ ସ୍ଥିର କଲେ । ମାନସ ଚକ୍ଷୁରେ ସ୍ୱାମୀଙ୍କର ଉଜ୍ଜ୍ୱଳ ମୁଖ ଝଲସି ଉଠିଲା । ସତେ ଅବା ସେ

କହୁଛନ୍ତି, ଯଶୋଧାରା, ଏ କଣ କରୁଛ ? ତୁମେ ପରା ମୋର ପତ୍ନୀ ! ପୃଥିବୀର ଦୁଃଖ ଦୂର କରିବା ପାଇଁ ମୁଁ ଆଗେଇ ଚାଲୁଥିଲି ବେଳେ, ତୁମ ମୁହଁରେ ଦୁଃଖ ଶୋଭା ପାଉନାହିଁ । ତୁମେ ପରିସ୍ଥିତି ସମ୍ଭାଳି ନେବାପାଇଁ ପ୍ରସ୍ତୁତ ହୁଅ । ସମୟ ନଷ୍ଟ କର ନାହିଁ ।

ଯଶୋଧାରା ବହୁ ପୂର୍ବରୁ ସ୍ୱାମୀଙ୍କ ଗନ୍ତବ୍ୟ କଥା ଜାଣିଥିଲେ । ତାଙ୍କର ସନ୍ଦେହ ଥିଲା, ଦିନେ ନା ଦିନେ ଏଭଳି ଘଟଣା କିଛି ଘଟିପାରେ । ସେ ଧୈର୍ଯ୍ୟ ସହକାରେ ରାଜା ଶୁଦ୍ଧୋଦନଙ୍କ ଆଗରେ ଛିଡ଼ା ହୋଇ କହିଲେ, ହେ ପିତା ! ଆପଣଙ୍କ ପୁତ୍ର କଣ ସାଧାରଣ ମଣିଷ ? ସେ ଶାକ୍ୟବଂଶ ଉଜ୍ଜଳ କରିବେ । ଆପଣ ଯେପରି କପିଳବାସ୍ତୁର ପ୍ରଜାମାନଙ୍କର ମଙ୍ଗଳ ଚାହାଁନ୍ତି, ସେ ସେହିପରି ସମଗ୍ର ବିଶ୍ୱର ମଙ୍ଗଳ ଚାହାଁନ୍ତି । ସକଳ ପ୍ରାଣୀଙ୍କୁ ଅଜ୍ଞାନ ଅନ୍ଧକାରରୁ ଉଦ୍ଧାର କରିବା ପାଇଁ ସନ୍ନ୍ୟାସୀ ହୋଇ ଚାଲିଗଲେ । ମୋର ବିଶ୍ୱାସ, ସେ ତାଙ୍କ କାର୍ଯ୍ୟରେ ସିଦ୍ଧିଲାଭ କରିବେ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।

ରାଜା ଶୁଦ୍ଧୋଦନ ବଧୂ ଯଶୋଧାରାଙ୍କ ମୁହଁରେ ଏପରି ସାନ୍ତ୍ୱନା ଶୁଣି ଧୈର୍ଯ୍ୟ ଧରି ରହିଲେ ।

ଏହାପରେ ଯଶୋଧାରା ତାଙ୍କର ଶିଶୁ ପୁତ୍ର ରାହୁଲଙ୍କୁ ଶୁଦ୍ଧୋଦନଙ୍କ କୋଳରେ ଦେଇ କହିଲେ, ହେ ପିତା ! ଦୁଃଖ କରନ୍ତୁ ନାହିଁ । ରାହୁଲଙ୍କୁ ସେ ଛାଡି ଚାଲି ଯାଉଛନ୍ତି । ଏହାଙ୍କୁ ଦେଖି ପୁତ୍ରଶୋକ ଦୂର କରନ୍ତୁ ।

ଶୁଦ୍ଧୋଦନ ରାହୁଲଙ୍କୁ କୋଳରେ ଧରି ପ୍ରଫୁଲ୍ଲିତ ହେଲେ । ଏହାପରେ ରାହୁଲଙ୍କୁ ପିତାଙ୍କର ଯୋଗ୍ୟ କରି ଗଢ଼ିବା ପାଇଁ

ଯଶୋଧାଙ୍କ ତାଙ୍କୁ ଯତ୍ନରେ ସହିତ ଲାଳନପାଳନ କରିବାକୁ ଲାଗିଲେ ।

## ସିଦ୍ଧାର୍ଥଙ୍କ ସତ୍ୟ ଅନ୍ୱେଷଣ

ସିଦ୍ଧାର୍ଥ ପ୍ରାଣୀ ଜଗତର ଦୁଃଖ ଦୁର୍ଦ୍ଦଶା ଦୂର କରିବା ପାଇଁ ପଥ ଖୋଜି ବୁଲିଲେ । ସେ ବିଭିନ୍ନ ସ୍ଥାନ ଭ୍ରମଣ କଲେ ଓ ସେ ସମୟର ବହୁ ଜ୍ଞାନୀ, ସାଧୁ ଓ ପଣ୍ଡିତମାନଙ୍କୁ ସାକ୍ଷାତ କରି ମଣିଷର ଦୁଃଖ ମୋଚନ ପାଇଁ ଆଲୋଚନା କରିବାକୁ ଲାଗିଲେ ।

ଅରଣ୍ୟରେ ବାସ କରୁଥିବା ସାଧୁ ସନ୍ଥମାନେ ସିଦ୍ଧାର୍ଥଙ୍କୁ ନିଜ ନିଜର ଜୀବନ ଦର୍ଶନ ଶୁଣାଇଲେ । କିନ୍ତୁ ସେମାନଙ୍କ ଜୀବନ ଦର୍ଶନ କଥା ସିଦ୍ଧାର୍ଥଙ୍କ ମନକୁ ପାଇଲା ନାହିଁ । ସେ ଅନୁଭବ କଲେ, ତାଙ୍କ ପ୍ରଶ୍ନର ସମାଧାନ ସେ ନିଜେ ହିଁ କରିବେ । ତେଣୁ ଏହି ପ୍ରଶ୍ନର ଉତ୍ତର ପାଇବା ପାଇଁ ସେ ତପସ୍ୟାର ଅନୁକୂଳ ସ୍ଥାନଟିଏ ଖୋଜି ବୁଲିଲେ ।

ଶେଷରେ ସେ 'ଉରୁବେଳ' ନାମକ ଏକ ନିର୍ଜନ ସ୍ଥାନରେ ପହଞ୍ଚି ଗୋଟିଏ ବରଗଛ ମୂଳେ ବସି ତପସ୍ୟା ଆରମ୍ଭ କଲେ ।

ଉରୁବେଳରେ ପାଞ୍ଚଜଣ ସନ୍ନ୍ୟାସୀ ତାଙ୍କ ତପୋବିଧି ଲକ୍ଷ୍ୟ କଲେ । ସେମାନେ ବୁଝିଲେ, ତପସ୍ୟାମଗ୍ନ ସାଧୁ ନିଶ୍ଚୟ ଜଣେ ମହାନ ଆତ୍ମା । ସେମାନେ ତପସ୍ୱୀ ସିଦ୍ଧାର୍ଥଙ୍କ ପାଖେ ପାଖେ ରହି ତାଙ୍କର ଦେଖାଶୁଣା କରିବାକୁ ଲାଗିଲେ ।

ସିଦ୍ଧାର୍ଥ ନିଜ ଜୀବନକୁ କଷ୍ଟ ଦେଇ ଘୋର ଉପବାସରେ ତପସ୍ୟା କରି ବସିଲେ । କିନ୍ତୁ ଶୀଘ୍ର ହିଁ ସେ ଅଚେତନ ହୋଇ ପଡ଼ିଲେ । ଗୋପାଳ ବାଳକମାନେ ତାଙ୍କୁ ଦୁଧ ପିଆଇ ସୁସ୍ଥ କଲେ ।

ସମସ୍ତ ଧ୍ରମେ ସିଦ୍ଧାର୍ଥ ଉପଲବ୍‌ଧି କଲେ, ଶରୀରକୁ କଷ୍ଟ ଦେଇ ସେ ସତ୍ୟର ସନ୍ଧାନ ନେଇ ପାରିବେ ନାହିଁ । ମନ ସ୍ଵସ୍ଥ ଥିଲେ ଚିନ୍ତା କରିବା ସହଜ ହୁଏ ।

ଭିକ୍ଷୁ ଭାବରେ ଦେଶାଟନ କରୁ କରୁ ସାଧୁ ସନ୍ଥମାନଙ୍କ ମୁହଁରୁ ଶୁଣିଲେ, ତପସ୍ୟା ବଳରେ କୌଣସି ବସ୍ତୁ ଦୁର୍ଲଭ ନୁହେଁ । ତପସ୍ୟା ସକଳ ଲକ୍ଷ୍ୟ ସିଦ୍ଧକରେ ।

ସିଦ୍ଧାର୍ଥ ଏହାପରେ ଆହୁରି କଠୋର ତପସ୍ୟାରେ ନିମଗ୍ନ ହେଲେ । ତାଙ୍କ ଶରୀର ଖାଦ୍ୟ ବିନା କ୍ଷୀଣ ହୋଇ କଙ୍କାଳସାର ହେଲା ।

## ସୁଜାତାର ଖାଦ୍ୟ

ସିଦ୍ଧାର୍ଥ ଅନେକ ଉପାସରେ ତପସ୍ୟା କରୁଥିବା ଦେଖି 'ସୁଜାତା' ନାମ୍ନୀ ଜଣେ ଯୁବତୀ ତାଙ୍କୁ ବନ ଦେବତା ବୋଲି ମନେକରି କ୍ଷୀର ଦେଇ ସୁସ୍ଥ କଲା ।

ଅନେକରେ ଅଧୀର ହୋଇଥିବା ବୁଦ୍ଧ ସୁଜାତା ହସ୍ତରୁ ଖାଦ୍ୟ ଖାଇ ସୁସ୍ଥ ହେବା ପରେ ସୁଜାତା କହିଲା, ପ୍ରଭୁ, ମୋର ପୁଅକୁ ଆଶୀର୍ବାଦ କରନ୍ତୁ ।

ସିଦ୍ଧାର୍ଥ କହିଲେ, ମା, ମୋର ସେପରି କିଛି ମହିମା ନାହିଁ । ତେବେ ଅସମୟରେ ମୋତେ ଖାଦ୍ୟ ଦେଇ ସୁସ୍ଥ କଲ । ତୁମ ଆଚରଣ ଦେଖି ସନ୍ତୁଷ୍ଟ ହେଲି ଓ ଦୟାର ମହିମା ବୁଝିଲି । ତୁମେ ମୋର ଜୀବନ ରକ୍ଷା କରିବା ପରି, ପ୍ରକୃତ ସମସ୍ତ ପ୍ରାଣୀ ଜଗତରେ ଜୀବନ ରକ୍ଷା କରୁଛି । ତୁମେ ପ୍ରକୃତ ପରି ଦୟାମୟୀ ମାତା । ତୁମେ ସୁଖୀ ହୁଅ ।

ସୁଜାତା କହିଲା, ଆପଣବୋଧ ହୁଏ ଆପଣଙ୍କ ମହିମା ବିସ୍ତାର ନ କରିବା ପାଇଁ ଏପରି କହୁଛନ୍ତି । କିନ୍ତୁ ମୋର ଜାଣିବାରେ ଆପଣ ମହାପୁରୁଷ । ଦୟାକରି ମୋ ଘରେ ପାଦଧୂଳି ପକାନ୍ତୁ ।

ସିଦ୍ଧାର୍ଥ କହିଲେ, ମା, ମୁଁ ସତ କହୁଛି, ମୁଁ ମହାପୁରୁଷ ନୁହେଁ । ମୋର ତପସ୍ୟା ସିଦ୍ଧି ହୋଇ ନାହିଁ । ମୋ ତପସ୍ୟା ପୂର୍ଣ୍ଣ ହେବାପରେ ମୁଁ ତୁମ ଘରକୁ ନିଶ୍ଚୟ ଯିବି ଓ ତୁମର ଶିଶୁ ପୁତ୍ରକୁ ଦେଖିବି ।

ଏହା ଶୁଣି ସୁଜାତା ନୀରବରେ ବାହୁଡ଼ି ଗଲା ।

ଏହାପରେ ତପସ୍ୟା ପ୍ରତି ସିଦ୍ଧାର୍ଥଙ୍କ ମୋହ ତୁଟି ଗଲା । ସେ ଜାଣିଲେ, ତପସ୍ୟାରେ କେବଳ ନିଜପାଇଁ ଶକ୍ତି ମିଳିବ । ତହିଁରେ ପ୍ରାଣୀ ମାନଙ୍କର ମଙ୍ଗଳ କରି ହେବ ନାହିଁ । ତପସ୍ୟାର କଷ୍ଟକୁ ସେ ଆତ୍ମହତ୍ୟା ବୋଲି ମନେ କଲେ ।

ସୁଜାତା ହାତରୁ ଅନ୍ନ ଗ୍ରହଣ କରିଥିବା ଦେଖି ତାଙ୍କର ଦେଖାଶୁଣା କରୁଥିବା ପାଞ୍ଚଜଣ ସାଧୁ ଭାବିଲେ, ସିଦ୍ଧାର୍ଥ ତପସ୍ୟା ଭ୍ରଷ୍ଟ କରିଛନ୍ତି । ସେମାନେ ତାଙ୍କ ପାଖରୁ ଚାଲିଗଲେ ।

## ସିଦ୍ଧାର୍ଥରୁ 'ବୁଦ୍ଧ'

ସେ ସମୟରେ କେତେକ ତାନ୍ତ୍ରିକ ନିଜକୁ ସାଧୁରୂପେ ପରିଚୟ ଦେଇ ଅଘୋରର ସାଧନାଦ୍ୱାରା ଶକ୍ତି ହାସଲ କରୁଥିଲେ । ଲୋକଙ୍କ ଆଗରେ ଇନ୍ଦ୍ରଜାଲ ଦେଖାଇ ସେମାନଙ୍କୁ ଆକୃଷ୍ଟ କରି ଶିଷ୍ୟ କରୁଥିଲେ । ଧର୍ମ ନାମରେ ମିଥ୍ୟାଚାର କରୁଥିଲେ । ରାଜା ଜମିଦାର ମରିଗଲେ ସେମାନଙ୍କ ମୃତ ଆତ୍ମା ଶାନ୍ତି ପାଇବ ବୋଲି କହି ପଞ୍ଚ

ଇତ୍ୟାଦିର ଆୟୋଜନ କରୁଥିଲେ ଓ ତନ୍ମଧ୍ୟରୁ ନାନାମତେ ଲାଭବାନ ହେଉଥିଲେ । ଯଜ୍ଞରେ ପଶୁ ବଳି ଦେଉଥିଲେ । ଲୋକମାନେ ଏହି ବୁଦ୍ଧିମାନ ଲୋକଙ୍କ କବଳରେ ପଡ଼ି ସର୍ବସ୍ୱାନ୍ତ ହୋଇ ଯାଉଥିଲେ ।

ସିଦ୍ଧାର୍ଥଙ୍କ ମନରେ ପୁରାତନ ପ୍ରଚଳିତ ଧର୍ମ ଓ ତାର କୁସଂସ୍କାର ପ୍ରତି ଘୃଣାଭାବ ପ୍ରକାଶ ପାଇଲା । ତେଣୁ ସେ ଲୋକମାନଙ୍କ ମେଳରୁ ଦୂରେଇ ଯାଇ ନିରଞ୍ଜନା ନଦୀ କୂଳରେ ଥିବା ଏକ ଅଶ୍ୱତ୍ଥ ବୃକ୍ଷ ମୂଳରେ ଧ୍ୟାନମଗ୍ନ ହେଲେ । ଅନେକ ଦିନପରେ, ବୈଶାଖ ପୂର୍ଣ୍ଣିମୀ ରାତିରେ ସିଦ୍ଧାର୍ଥ ଅନୁଭବ କଲେ ସେ ତାଙ୍କ ପ୍ରଶ୍ନମାନଙ୍କର ଉତ୍ତର ପାଇଛନ୍ତି । ଫଳରେ ସେ ଶାନ୍ତି ଅନୁଭବ କଲେ । ସେ ଏକ ଦିବ୍ୟ ଶାନ୍ତି ।

ସେହି ବୈଶାଖ ପୂର୍ଣ୍ଣିମୀ ଦିନ ସେ 'ବୁଦ୍ଧ' ପାଲଟି ଗଲେ । ବୁଦ୍ଧ ତାଙ୍କର ଅମୂଲ୍ୟ ପ୍ରାପ୍ତିର ନାମ ଦେଲେ 'ନିର୍ବାଣ' । ବୁଦ୍ଧ ଜନ୍ମ ଗ୍ରହଣ କରିଥିଲେ ବୈଶାଖ ପୂର୍ଣ୍ଣିମୀ ଦିନ । ସେହି ବୈଶାଖ ପୂର୍ଣ୍ଣିମୀ ଦିନ ତାଙ୍କର ନିର୍ବାଣ ଲାଭ ହେଲା । ତେଣୁ ବୈଶାଖ ପୂର୍ଣ୍ଣିମୀକୁ 'ବୁଦ୍ଧ ପୂର୍ଣ୍ଣିମା' ବୋଲି କୁହାଯାଏ । ସେ ଯେଉଁ ଅଶ୍ୱତ୍ଥ ବୃକ୍ଷ ମୂଳରେ ବସି ତପସ୍ୟା କରୁଥିଲେ । ସେହି ଅଶ୍ୱତ୍ଥ ବୃକ୍ଷକୁ ବୋଧିବୃକ୍ଷ' ନାମରେ ନାମିତ କରାଯାଇଛି ।

ବୁଦ୍ଧଦେବ ନିଜେ ବୋଧିସତ୍ତ୍ୱ ଭାବରେ ଖ୍ୟାତି ଲାଭ କଲେ ।

## 'ବୁଦ୍ଧ'ରେ ପରିଣତ ହେବାପରେ

'ସିଦ୍ଧାର୍ଥ' ଗୌତମୀ ରୂପେ ପରିଚିତ ଥିଲେ । ଧ୍ୟାନରେ ସିଦ୍ଧି ଲାଭ କରିବା ପରେ ସେ ବୁଦ୍ଧରେ ପରିଣତ ହେଲେ । ଲୋକଙ୍କ ପାଇଁ ସେ ହେଲେ 'ବୁଦ୍ଧଦେବ' ।

ଏହାପରେ ସେ ଜନ୍ମ-ମୃତ୍ୟୁ ବନ୍ଧନରୁ ମୁକ୍ତ ହୋଇ ନିଜେ ନିର୍ବାଣ ଲାଭକରି ପାରିଥାନ୍ତେ । କିନ୍ତୁ ପୀଡ଼ିତ ମାନବ ଜାତି ପ୍ରତି ତାଙ୍କର ଗଭୀର ସହାନୁଭୂତି ଥିଲା । ତେଣୁ ମାନବ ଜାତିର କଲ୍ୟାଣ ସାଧନ ପାଇଁ ସେ ତାଙ୍କର ମୁକ୍ତି-ବାର୍ତ୍ତା ପହଞ୍ଚାଇ ଦେବା ପାଇଁ ରାଜ୍ୟସାରା ଭ୍ରମଣ କରିବାକୁ ବାହାରିଲେ । ଲୋକଙ୍କୁ ପ୍ରକୃତ ଜ୍ଞାନ ଶିକ୍ଷାଦେବା ତାଙ୍କ ଜୀବନର ଲକ୍ଷ୍ୟଥିଲା ।

ବୁଦ୍ଧ କପିଳବାସ୍ତୁକୁ ଫେରି ଯାଇଥିଲେ ପିତା ଶୁଦ୍ଧୋଦନ ଆନନ୍ଦରେ ତାଙ୍କୁ ରାଜ ସିଂହାସନ ସମର୍ପଣ କରି ଦେଇଥାନ୍ତେ । ଯଶୋଧାରା ପ୍ରିୟତମ ପତିଙ୍କୁ ପାଇ ପରମ ଆପ୍ୟାୟିତ ହୋଇଥାନ୍ତେ । କପିଳବାସ୍ତୁର ପ୍ରଜାମାନେ ତାଙ୍କୁ ରାଜାରୂପେ ପାଇ ରାଜ୍ୟସାରା ଉତ୍ସବର ଆୟୋଜନ କରିଥାନ୍ତେ । କିନ୍ତୁ ବୁଦ୍ଧଦେବ ସେସବୁ ଚାହିଁଲେ ନାହିଁ । ସେ ସାଂସାରିକ ମାୟାରେ ପଡ଼ି ନିଜ ଜୀବନକୁ ବ୍ୟର୍ଥ କରିବାକୁ ପସନ୍ଦ କଲେ ନାହିଁ । କପିଳବାସ୍ତୁର ରାଜ ସିଂହାସନ ଛାଡ଼ି ବିଶ୍ୱବାସୀଙ୍କ ହୃଦୟ ସିଂହାସନ ଦଖଲ କରିଦେଲେ । ସେ ହେଲେ ସମଗ୍ର ବିଶ୍ୱର ଧର୍ମ ଜଗତର ସମ୍ରାଟ ।

## ଧର୍ମ ପ୍ରଚାର

ବୁଦ୍ଧ ହେବାପରେ, ଯେଉଁ ପାଞ୍ଚ ଜଣ ସନ୍ନ୍ୟାସୀ ପ୍ରଥମେ ତାଙ୍କ ପାଖରେ ଥିଲେ ଓ ସୁଜାତା ହସ୍ତରୁ କ୍ଷୀରି ଖାଇବା ପରେ ଛାଡ଼ି ପଳାଇ ଯାଇଥିଲେ, ସେମାନଙ୍କୁ ଖୋଜି ବାହାର କରିବା ହେଲା ବୁଦ୍ଧଦେବଙ୍କର ପ୍ରଥମ କାର୍ଯ୍ୟ ।

ବାରଣସୀ ପାଖରେ ଥିବା ଏକ ଉଦ୍ୟାନରେ ସେ ସେହି ପାଞ୍ଚ ଜଣ ସାଧୁଙ୍କୁ ଭେଟିଲେ । ପ୍ରଥମେ ସେମାନେ ବୁଦ୍ଧଙ୍କୁ ଦେଖି ମଧ୍ୟ

ନ ଦେଖିବାର ଛଳନା କଲେ । କିନ୍ତୁ ପରେ ବୁଦ୍ଧଙ୍କ ଉପଦେଶ ଶୁଣି ତାଙ୍କର ଶିଷ୍ୟ ହେଲେ । ଏମାନଙ୍କ ପରେ ଯଶ ନାମକ ଜଣେ ଧନୀପୁତ୍ର ବୁଦ୍ଧଙ୍କର ଷଷ୍ଠ ଶିଷ୍ୟ ହେଲେ । ଯଶଙ୍କ ପିତା ଏଥିରେ କ୍ରୋଧ ପ୍ରକାଶ କରି ପୁତ୍ରକୁ ବୁଦ୍ଧଦେବଙ୍କ ପାଖରୁ ଫେରାଇ ନେବାପାଇଁ ଆସିଲେ । କିନ୍ତୁ ବୁଦ୍ଧଙ୍କ ସଙ୍ଗରେ ଆଲୋଚନା କରିବା ପରେ ତାଙ୍କ ମନ ମାନିଗଲା । ସେ ପୁଅକୁ ଆଉ ଫେରାଇ କେବେ କଣ, ନିଜେ ତାଙ୍କର ଶିଷ୍ୟ ହେଲେ । ଥରେ ଏକ ଜଳାଶୟ ନିକଟରେ ଦଳେ ଧନୀ ଯୁବକ ସସ୍ତ୍ରୀକ ଆସି ଜଳ ବିହାର କରୁଥିଲେ । ଜଣେ ଯୁବକ ଆମୋଦ ପ୍ରମୋଦ ପାଇଁ ଏକ ନର୍ତ୍ତକୀକୁ ନେଇ ଆସିଥିଲେ । ସେହି ନର୍ତ୍ତକୀ ନିଜେ ମଦଖାଇ ନାଚିଲା ଓ ଧନୀ ଯୁବକମାନଙ୍କୁ ମଧ୍ୟ ମଦଖିଆଇ ନଚାଇଲା । ଆମୋଦପ୍ରମୋଦ ପରେ ସମସ୍ତେ ଖାଇ ପିଇ ଆରାମରେ ଶୋଇ ଯାଇଥିଲାବେଳେ, ନର୍ତ୍ତକୀ ସମସ୍ତଙ୍କର ମୂଲ୍ୟବାନ ଗହଣା ଓ ପୋଷାକ ପତ୍ର ନେଇ ସେଠାରୁ ପଳାଇଗଲା । ପରେ ନିଦ ଭାଙ୍ଗିବା ପରେ, ଯୁବକମାନେ ନିଜ ଭୁଲ ବୁଝିପାରି ନର୍ତ୍ତକୀକୁ ଧରିବା ପାଇଁ ଧାଇଁବାକୁ ଲାଗିଲେ ।

ଠିକ୍ ଏହି ସମୟରେ ବୁଦ୍ଧଦେବ ସେହି ବାଟରେ ଚାଲି ଯାଉଥିଲେ ।

ଯୁବକମାନେ ବୁଦ୍ଧଦେବଙ୍କୁ ପ୍ରଶ୍ନକଲେ ଆପଣ ଏକ ନର୍ତ୍ତକୀକୁ ଦେଖିଛନ୍ତି କି ?

ବୁଦ୍ଧଦେବ ଏହି ଯୁବକମାନଙ୍କୁ ଅଟକାଇ ପ୍ରଶ୍ନ କଲେ, କୁହ, ଜଣେ ନର୍ତ୍ତକୀ ପଛରେ ଧାଇଁବ ନା ନିଜ ଆତ୍ମାର ସନ୍ଧାନ ନେବ ?

ବୁଦ୍ଧଦେବଙ୍କର କଥାଶୁଣି ଯୁବକମାନଙ୍କର ଜ୍ଞାନଉଦୟ ହେଲା । ସେମାନେ ବୁଦ୍ଧଙ୍କ ପାଦତଳେ ପଡ଼ି ତାଙ୍କର ଶିଷ୍ୟ ପାଲଟି ଗଲେ ।

# ସାଧୁ କାଶ୍ୟପ ଶିଷ୍ୟ ହେଲେ

ଉରୁବେଳ ଠାରେ କାଶ୍ୟପ ନାମରେ ଜଣେ ପ୍ରସିଦ୍ଧ ସାଧୁ ବାସ କରୁଥିଲେ । ତାଙ୍କ ସଙ୍ଗରେ ପାଞ୍ଚଶହ ଶିଷ୍ୟ ଥିଲେ । କାଶ୍ୟପ ନିଜକୁ ଖୁବ ଜ୍ଞାନୀ ମନେ କରୁଥିଲେ ।

ବୁଦ୍ଧଦେବ କାଶ୍ୟପଙ୍କୁ ଆସି ଦେଖାକଲେ ଓ ତାଙ୍କ ସଙ୍ଗରେ ଧର୍ମ ବିଷୟରେ ଆଲୋଚନା କଲେ । ଅବଶେଷରେ ବୁଦ୍ଧଦେବ ବୃଦ୍ଧ କାଶ୍ୟପଙ୍କୁ ନିଜର ତତ୍ତ୍ୱ ଶୁଣାଇଲେ ।

ବୃଦ୍ଧ ସାଧୁ କାଶ୍ୟପ ବୁଦ୍ଧଦେବଙ୍କ ତତ୍ତ୍ୱ ଶୁଣି ପ୍ରୀତ ହେଲେ । ତାଙ୍କ ମନରୁ ସବୁ ଗର୍ବ ଅଭିମାନ ଦୂରେଇ ଗଲା । ସେ ବୁଦ୍ଧଦେବଙ୍କୁ ଗୁରୁବୋଲି ସ୍ୱୀକାର କଲେ । କାଶ୍ୟପଙ୍କ ପାଞ୍ଚଶହ ଶିଷ୍ୟ ମଧ୍ୟ ବୁଦ୍ଧଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ଫଳରେ କାଶ୍ୟପ ଓ ତାଙ୍କର ଶିଷ୍ୟମାନେ ଜଟା ଓ ଦାଢ଼ୀ କାଟି ନଈ ସୁଅରେ ଭସାଇ ଦେଲେ । ଏହି ଜଟା ଓ ଦାଢ଼ୀଗୁଡ଼ିକ ଭାସିଭାସି ଯାଇ ଅନେକ ଦୂରରେ ଲାଗିଲା । ସେଠାରେ ବାସ କରୁଥିବା ଦୁଇଜଣ ଅନ୍ୟ ଗୁରୁଙ୍କ ଶିଷ୍ୟ ତାକୁ ଲକ୍ଷ୍ୟ କଲେ । ସେମାନେ ଘଟଣା କଣ ବୁଝିବା ପାଇଁ ଉରୁବେଳକୁ ଆସିଲେ । ସେଠାରେ ସେ ଦୁହେଁ ବୁଦ୍ଧଦେବଙ୍କ ଆଲୋଚନାରେ ସନ୍ତୁଷ୍ଟ ହୋଇ ତାଙ୍କର ନୂତନ ଧର୍ମ ଗ୍ରହଣ କଲେ ।

ଏହିପରି ଭାବରେ ବୁଦ୍ଧଦେବଙ୍କ ଶିଷ୍ୟ ସଂଖ୍ୟା ବଢି ବଢି ଚାଲିଲା । ତାଙ୍କର ଖ୍ୟାତି ଚତୁର୍ଦ୍ଦିଗକୁ ବିସ୍ତାରିତ ହେଲା ।

# ରାଜଗୃହରେ ବୁଦ୍ଧଦେବ

ନିଜ ସଙ୍ଗରେ ବହୁ ଶିଷ୍ୟଙ୍କୁ ନେଇ ବୁଦ୍ଧଦେବ ତାଙ୍କ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ରାଜଗୃହରେ ପହଞ୍ଚିଲେ ।

ରାଜା ବିମ୍ବିସାର ବୁଦ୍ଧଦେବଙ୍କ ପ୍ରସନ୍ନ ମୁଖ ଦେଖି ପରମ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ବୁଦ୍ଧଦେବଙ୍କୁ ତାଙ୍କର ସମସ୍ତ ଐଶ୍ୱର୍ଯ୍ୟ ଏବଂ ହାତୀ ଘୋଡ଼ା ଇତ୍ୟାଦି ଦାନ କରିବାକୁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ବୁଦ୍ଧଦେବ ସେପରି କୌଣସି ଦାନ ଗ୍ରହଣ କରିବାକୁ ରାଜି ହେଲେ ନାହିଁ ।

ରାଜା ବିମ୍ବିସାର ସ୍ୱହସ୍ତରେ ବୁଦ୍ଧଦେବଙ୍କୁ ଖୁଆଇ ତୃପ୍ତି ଅନୁଭବ କରିଥିଲେ ଓ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । କେବଳ ରାଜା ବିମ୍ବିସାର ନୁହନ୍ତି, ରାଜଗୃହରେ ବହୁଲୋକ ବୁଦ୍ଧଦେବଙ୍କ ନୂତନ ଧର୍ମରେ ଦୀକ୍ଷିତ ହୋଇଥିଲେ । ବିମ୍ବିସାର ତାଙ୍କ ରାଜ୍ୟରେ ଅନୁଷ୍ଠିତ ହେଉଥିବା ଯଜ୍ଞ ଓ ବଳି ପ୍ରଥା ବନ୍ଦକରି ଦେଇଥିଲେ । ସେ ନିଜେ ରାଜ୍ୟସାରା ବୁଦ୍ଧବାଣୀ ପ୍ରଚାର କରି ବୁଲୁଥିଲେ ।

ବୁଦ୍ଧଦେବ ଏହାପରେ ବୌଦ୍ଧ ସଂଘମାନ ପ୍ରତିଷ୍ଠା କଲେ । ଏହି ଧର୍ମାବଲମ୍ବୀମାନଙ୍କୁ ବୌଦ୍ଧ ବୋଲି କୁହାଗଲା ।

ଜାତିଧର୍ମ ନିର୍ବିଶେଷରେ ବହୁଲୋକ ବୌଦ୍ଧଧର୍ମ ଗ୍ରହଣ କରିବାକୁ ଲାଗିଲେ ।

## ଶୁଦ୍ଧୋଦନଙ୍କ ନିମନ୍ତ୍ରଣ

ବୁଦ୍ଧଦେବ ବମ୍ବିସାରଙ୍କ ଅତିଥି ଭାବରେ ଅବସ୍ଥାନ କଲାବେଳେ ତାଙ୍କ ପିତା ଶୁଦ୍ଧୋଦନ ତାଙ୍କୁ ଓ ତାଙ୍କର ଶିଷ୍ୟମାନଙ୍କୁ କପିଳବାସ୍ତୁକୁ ନିମନ୍ତ୍ରଣ କଲେ । କିନ୍ତୁ ଯେଉଁ ଲୋକ ନିମନ୍ତ୍ରଣ କରିବାକୁ ବୁଦ୍ଧଦେବଙ୍କ ପାଖରେ ପହଞ୍ଚିଥିଲା, ସେ ଆଉ କପିଳବାସ୍ତୁକୁ ଫେରି ନଯାଇ ବୁଦ୍ଧଦେବଙ୍କ ପାଖରେ ଶରଣ ନେଇ ରହିଗଲା । ଏହିପରି ଭାବରେ ଜଣକପରେ ଜଣେ ବାର୍ତ୍ତାବହ ଆସି ବୁଦ୍ଧଦେବଙ୍କ ସଂଘରେ ଅଟକି ଗଲେ ।

ଏହିପରି ଭାବରେ ସିଦ୍ଧି ଲାଭ କରିବାର ଛଅବର୍ଷ ପରେ ବୁଦ୍ଧଦେବ ସ୍ୱୟଂ ଯାଇ କପିଳବାସ୍ତୁ ରାଜ୍ୟରେ ପହଞ୍ଚିଲେ ।

କପିଳବାସ୍ତୁରେ ବୁଦ୍ଧଦେବ ପହଞ୍ଚିଥିବା ସମ୍ବାଦ ବିଜୁଳି ବେଗରେ ଚାରିଆଡ଼େ ପ୍ରଚାରିତ ହୋଇଗଲା । ସମଗ୍ର ରାଜ୍ୟ ପରିବାର ଓ ପ୍ରଜାମାନେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ପ୍ରସ୍ତୁତ ହେଲେ । ସାରା ରାଜ୍ୟରେ ଉତ୍ସାହ ଭରି ଯାଇଥିଲା । ରାଜା ଶୁଦ୍ଧୋଦନ ପୁତ୍ର ଫେରି ଆସୁଥିବା ସମ୍ବାଦ ପାଇ ଆନନ୍ଦରେ ଅଧୀର ହେଲେ ।

ବଡ଼ ହୋଇ ଆସୁଥିବା ବୁଦ୍ଧଙ୍କର ପୁତ୍ର ରାହୁଳ ମାତା ଯଶୋଧାରାଙ୍କୁ କହିଲା, ବାପା ଫେରି ଆସୁଛନ୍ତି ବୋଲି ଶୁଣା ଯାଉଛି । ଏ କଥା କଣ ସତ ?

ଯଶୋଧାରା ଉତ୍ତର ଦେଲେ, ହଁ ପୁଅ, ତୋର ବାପା ଜଣେ ଭିକ୍ଷୁକ ଭାବରେ ଆସୁଛନ୍ତି ।

କାହିଁକି ମା, ? ଏ କପିଳବାସ୍ତୁ ରାଜ୍ୟ ତ ତାଙ୍କର । ସେ ଭିକ୍ଷୁକ ହୋଇ ଭିକ୍ଷା ମାଗିବେ କାହିଁକି ? ରାହୁଳ ପ୍ରଶ୍ନ କଲା ।

କେବଳ କପିଳବାସ୍ତୁ ରାଜ୍ୟ ନୁହେଁ, ସେ ସାରା ଜଗତକୁ ଜ୍ଞାନ ଦାନ କରିବେ । ତାଙ୍କୁ ଅନୁସରଣ କରିବାକୁ ସେ ଭିକ୍ଷା କରିବେ । ତୁ କଣ ସେ ଭିକ୍ଷା ଦେବୁ ? ଯଶୋଧାରା ଶିଶୁପୁତ୍ର ରାହୁଲକୁ ପଚାରିଲେ ।

ରାହୁଲ ଖୁସି ହୋଇ କହିଲା, ହଁ ମା ! ମୁ ପାରିବ । ମୁଁ ତାଙ୍କ ସଙ୍ଗରେ ରହିବ । ସାରା ଜୀବନ ତାଙ୍କ କଥା ମାନି ଚଳିବ ।

ସୁପୁତ୍ର ରାହୁଲର ଉତ୍ତର ଶୁଣି ଯଶୋଧାରାଙ୍କ ଦୁଇ ଆଖିରୁ ଦୁଇଧାର ଲୁହ ଝରି ପଡ଼ିଲା । ପୁତ୍ର ରାହୁଲ ଯେ ଭଗବାନ ବୁଦ୍ଧଙ୍କର ସୁଯୋଗ୍ୟ ପୁତ୍ର ତାହା ସେ ମର୍ମେ ମର୍ମେ ଅନୁଭବ କଲେ ।

ବୁଦ୍ଧଦେବଙ୍କ ଆଗମନ ନିମନ୍ତେ ପ୍ରଜାମାନେ ରାଜ୍ୟର ପ୍ରତ୍ୟେକ ପୁରପଲ୍ଲୀକୁ ସଜାଇ ରଖିଲେ । ସମସ୍ତେ ତାଙ୍କୁ ଅପେକ୍ଷା କଲେ । ସେମାନେ ନିଜକୁ କପିଳବାସ୍ତୁର ପ୍ରଜା ହେବ ଗର୍ବ ଅନୁଭବ କଲେ ।

ଏତେ ଦିନ ପରେ ପୁତ୍ର ବୁଦ୍ଧଦେବଙ୍କ ମୁଖ ଦର୍ଶନ କରିବେ ବୋଲି ରାଜା ପିତା ଶୁଦ୍ଧୋଦନ ଓ ନିର୍ମାତା ଗୌତମୀ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଲେ ।

ଏହିପରି ଭାବରେ କ୍ରମେ ବହୁଦୂରରୁ ଜନ କୋଳାହଳ ଶୁଣାଗଲା । ସମସ୍ତେ କହିଲେ, ବୁଦ୍ଧଦେବ କପିଳବାସ୍ତୁ ନଗରରେ ପହଞ୍ଚି ଗଲେଣି ।

କରୁଣାର ପ୍ରତିମୂର୍ତ୍ତି ବୁଦ୍ଧଦେବ ହଜାର ହଜାର ଶିଷ୍ୟଙ୍କ ସଙ୍ଗରେ ଖାଲି ପାଦରେ ଚାଲି ଆସୁଥିଲେ । ଶିଷ୍ୟମାନେ ପାଟିକରି କହୁଥିଲେ——

"ବୁଦ୍ଧଂ ଶରଣଂ ଗଚ୍ଛାମି,
ସଙ୍ଘଂ ଶରଣଂ ଗଚ୍ଛାମି,
ଧର୍ମଂ ଶରଣଂ ଗଚ୍ଛାମି ।"

ଏହି ଶବ୍ଦରେ ଚତୁର୍ଦ୍ଦିଗ ଉଜ୍ଜ୍ୱଳ ଉଠୁଥିଲା ।

ଏଣେ ରାଜ ପ୍ରାସାଦରେ ଶୁଦ୍ଧୋଦନ, ଗୌତମୀ, ଯଶୋଧାରା ଓ ରାହୁଳ ବୁଦ୍ଧଙ୍କ ପ୍ରତିକ୍ଷାରେ ଥିଲେ । ଗୋଟିଏ ମୁହୂର୍ତ୍ତ ଗୋଟିଏ ଯୁଗ ପରି ଲାଗୁଥିଲା । ସେମାନଙ୍କ ସଙ୍ଗରେ ସାରଥି ମଧ୍ୟ ଅପେକ୍ଷା କରିଥିଲା ।

ଅବଶେଷରେ ବୁଦ୍ଧ ଆସି ପହଞ୍ଚି ଗଲେ । ରାଜପ୍ରାସାଦ ଆଗରେ ବୁଦ୍ଧଦେବଙ୍କର ଶୋଭାଯାତ୍ରା ଅଟକି ଗଲା । ବୁଦ୍ଧଦେବଙ୍କ ହାତରେ ଭିକ୍ଷା ପାତ୍ର ଥିଲା । ପୁତ୍ର ରାହୁଳ ଧାଇଁ ଯାଇ ପିତାଙ୍କୁ ଭୂମିଷ୍ଠ ପ୍ରଣିପାତ ଜଣାଇଲା ।

ସେତେବେଳେ ଯଶୋଧାରାଙ୍କ ଦୁଇ ଆଖି ଲୁହରେ ଭରି ଯାଇଥିଲା । ତାଙ୍କ ଆଗରେ ପ୍ରିୟତମ ସ୍ୱାମୀ ଛିଡ଼ା ହୋଇଗଲେ । କିନ୍ତୁ ତାଙ୍କର ଭିକ୍ଷୁକ ବେଶ ଦେଖି ସେ ପ୍ରାସାଦ ଭିତରକୁ ଚାଲିଯାଇ କାନ୍ଦିଲେ । ସେ ଆଉ ତାଙ୍କ ପାଖକୁ ଗଲେ ନାହିଁ । ପଚାରିବାରୁ କହିଲେ, ତାଙ୍କର ଦୟା ମୋର ପ୍ରାପ୍ୟ ହୋଇଥିଲେ ସେ ନିଜେ ମୋ ପାଖକୁ ଆସି ଦର୍ଶନ ଦେବେ ।

ବୁଦ୍ଧ ପରେ ଯଥା ସମୟରେ ଆସି ପତ୍ନୀ ଯଶୋଧାରାଙ୍କୁ ଦର୍ଶନ କରିଥିଲେ ।

ପୁତ୍ରକୁ ଆଲିଙ୍ଗନ କରିବାକୁ ଅପେକ୍ଷା କରିଥିବା ରାଜା ଶୁଦ୍ଧୋଦନ ପୁତ୍ରର ଭିକ୍ଷୁକ ବେଶ ଦେଖି ଗଭୀର ଦୁଃଖ ପ୍ରକାଶ

କଲେ । ତାଙ୍କ ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିବାକୁ ଲାଗିଲା । ଶେଷରେ ବୁଦ୍ଧଦେବଙ୍କ ପାଖରେ ଛିଡ଼ା ହୋଇ କମ୍ପିତ କଣ୍ଠରେ କହିଲେ, ଏ କଣ କଲୁ ଗୌତମ ? ଏହା କହି ସେ ସଂଜ୍ଞା ହରାଇ ବସିଲେ ।

ବୁଦ୍ଧଦେବ ପିତାଙ୍କ ମସ୍ତକକୁ ନିଜ କୋଳରେ ରଖି ସେବା କଲେ ।

ବୁଦ୍ଧଦେବଙ୍କ ହାତ ବାଜ ଶୁଦ୍ଧୋଦନଙ୍କ ଚେତା ଫେରି ଆସିଲା । ପିତାଙ୍କୁ ଚାହିଁ ବୁଦ୍ଧଦେବ କହିଲେ, ପିତା ! ମୁଁ ଯେଉଁଥି ପାଇଁ ସନ୍ୟାସୀ ହୋଇ ଚାଲି ଯାଇଥିଲି, ତାହା ପାଇ ଫେରିଛି । ଆପଣ ଦୁଃଖ ନ କରି ଆନନ୍ଦ ହୁଅନ୍ତୁ ।

ବୁଦ୍ଧଦେବଙ୍କର ଏହି ମଧୁର କଥା ପଦକ ରାଜା ଶୁଦ୍ଧୋଦନଙ୍କୁ ଅପାର ଆନନ୍ଦ ଦେଲା ।

ଏହାପରେ ବୁଦ୍ଧଦେବ ରାହୁଲଙ୍କୁ ଆଶୀର୍ବାଦ କରି କହିଲେ, ମୋର ଇଚ୍ଛା, ତୁ ମଧ୍ୟ 'ବୁଦ୍ଧ' ହୋଇ ଜଗତର ସେବା କର ।

ରାହୁଲ 'ବୁଦ୍ଧ' ଅର୍ଥ ପଚାରିବାରୁ ବୁଦ୍ଧଦେବ କହିଲେ, ଉତ୍ତମ ଧର୍ମ ଆଚରଣ କରୁଥିବା ଓ ଅହିଂସା ମନ୍ତ୍ରରେ ଦୀକ୍ଷିତ ହୋଇଥିବା ସମସ୍ତେ ବୁଦ୍ଧ । ଏହି ବୁଦ୍ଧମାନେ ଜଗତର କଲ୍ୟାଣ ସାଧନ କରନ୍ତି । ଗୌତମୀଙ୍କୁ ମଧ୍ୟ ସେ ଆଶ୍ୱାସନା ବାଣୀ ଶୁଣାଇ ସୁଖୀ କଲେ ।

ଶେଷରେ ବୁଦ୍ଧଦେବଙ୍କର ଆଖି ପଡ଼ିଲା ସାରଥି ଉପରେ । ସାରଥି ଯୋଡ଼ ହାତରେ ଛିଡ଼ା ହୋଇ ରହିଥିଲା । ବୁଦ୍ଧଦେବ

ସାରଥିକୁ ଆଲିଙ୍ଗନ କରିବା ପାଇଁ ତା ପାଖକୁ ଲାଗି ଆସିଲେ । କିନ୍ତୁ ସାରଥି ତାଙ୍କର ପାଦ ଛୁଇଁବାକୁ ନଇଁ ପଡ଼ିଲା । ଏହା ଦେଖି ବୁଦ୍ଧଦେବ ସାରଥିକୁ ଦୁଇ ହାତରେ ଟେକିଧରି ଆଲିଙ୍ଗନ କଲେ ଏବଂ କହିଲେ, ମୁଁ ଯେତେ ବଡ଼ ହେଲେ ବି ତୁମ ପାଖରେ ଖୁବ୍ ସାନ । ଏହି କପିଳବାସ୍ତୁରୁ ବାହାରି ଅନନ୍ତ ବିଶ୍ୱରେ ପ୍ରବେଶ କରିବା ପାଇଁ ଯେତେବେଳେ ଇଚ୍ଛା କରିଥିଲି, ତୁମେହିଁ ମୋତେ ସେହି ପଥ ଦେଖିବାରେ ସାହାଯ୍ୟ କରିଥିଲ । ତେଣୁ ମୁଁ ତୁମ ପାଖରେ ଚିର କୃତଜ୍ଞ । ସାରଥି ଏହା ଶୁଣି ଗଦ୍‌ଗଦ୍ କଣ୍ଠରେ କହିଲା, ମୋର ପ୍ରିୟ ଗୌତମ ! ତୁମେ ଆଜି ଖୁବ୍ ବଡ଼ ହୋଇ ଯାଇଛ । ଏହା ଦେଖି ମୋ ଛାତି ଫୁଲି ଉଠୁଛି । ତୁମର ଧର୍ମ ପ୍ରତି ମୋର ଅଖଣ୍ଡ ବିଶ୍ୱାସ ଜାଗି ଉଠୁଛି । ମୁଁ ତୁମକୁ ଆଜିଠାରୁ **'ଭଗବାନ ବୁଦ୍ଧ'** ବୋଲି ଡ଼ାକିବି ।

ବୁଦ୍ଧ ତାହା ଶୁଣି ନୀରବ ହେଲେ ।

ଆଉ ସେହି ଦିନ ଠାରୁ ବୁଦ୍ଧ 'ଭଗବାନ ବୁଦ୍ଧ' ନାମରେ ଖ୍ୟାତ ହେଲେ ।

## ଭାଇ 'ନନ୍ଦ' ଶିଷ୍ୟ ହେଲେ

ବୁଦ୍ଧ ଗୃହତ୍ୟାଗୀ ହୋଇଥିବାରୁ ବିମାତା ପୁତ୍ର ନନ୍ଦଙ୍କୁ ରାଜ୍ୟର ଯୁବରାଜ କରିବା ଆୟୋଜନ ଚାଲିଲା । ସିଂହାସନରେ ବସିବା ଦିନ ସେ ବିବାହ ମଧ୍ୟ କରିଥାନ୍ତେ । ସେଥିପାଇଁ ସାରା କପିଳବାସ୍ତୁ ନଗରୀ ଉତ୍ସବ ମୁଖର ଥିଲା ।

ସୁସଜ୍ଜିତ 'ନନ୍ଦ' ଆଶୀର୍ବାଦ ଲାଭ କରିବା ନିମନ୍ତେ ବୁଦ୍ଧଦେବଙ୍କ ପାଖରେ ଉପସ୍ଥିତ ହେଲେ ।

ବୁଦ୍ଧ ଘରେ ନନ୍ଦଙ୍କୁ ଆଶୀର୍ବାଦ ଦେବେ ଜଣ, ତାଙ୍କର ଭିକ୍ଷା ପାତ୍ରଟିକୁ ନନ୍ଦଙ୍କ ହାତରେ ଧରାଇଦେଲେ ।

ନନ୍ଦ ଭିକ୍ଷାପାତ୍ର ଧରି ବୁଦ୍ଧଦେବଙ୍କ ପାଖରେ ରହିଲେ ।

ପ୍ରାସାଦ ଭିତରେ ଅପେକ୍ଷା କରିଥିବା ନନ୍ଦଙ୍କ ଭାବିପତ୍ନୀ ଏହା ଦେଖି କରୁଣ କଣ୍ଠରେ କାନ୍ଦିବାକୁ ଲାଗିଲେ । ସମଗ୍ର ରାଜ-ପ୍ରାସାଦରେ ହା'ହୋଳ ପଡ଼ିଗଲା । ନନ୍ଦ ଆଉ ଫେରିଲେ ନାହିଁ ।

## ପୁତ୍ର ରାହୁଲଙ୍କ ଦୀକ୍ଷା ଗ୍ରହଣ

ଦିନେ ବୁଦ୍ଧଦେବଙ୍କ ପତ୍ନୀ ଯଶୋଧାରା ପୁତ୍ର ରାହୁଳଙ୍କୁ କହିଲେ ତୋର ପିତାଙ୍କ ପାଖରେ ଗୁଟିଏ ରତ୍ନଭରା ପେଟିକା ଥିଲା । ତୁ ଯାଇ ତୋର ବାପାଙ୍କୁ ପଚାରିବୁ, ସେହି ରତ୍ନ ପେଟିକା ସବୁ କେଉଁଠି ରଖିଛନ୍ତି ? ମାତାଙ୍କର କଥା ଶୁଣି ରାହୁଳ ପିତାଙ୍କ ପାଖକୁ ଗଲେ । ସେ ତାଙ୍କର ଦର୍ଶନ କରି କହିଲେ, ପିତା । ମୁଁ ଆପଣଙ୍କ ସମ୍ପଦର ଉତ୍ତରାଧିକାରୀ । ମୋତେ ତାହା ପ୍ରଦାନ କରନ୍ତୁ ।

ବୁଦ୍ଧଦେବ ପୁତ୍ର ରାହୁଳଙ୍କୁ କହିଲେ, ମୋ ପାଖରେ ଥିବା ସବୁଠାରୁ ମୂଲ୍ୟବାନ ସମ୍ପଦ ତୋତେ ଦେବି । ତାହାହେଲା, 'ଜ୍ଞାନ ସମ୍ପଦ' । ନେବୁ ତ ?

ରାହୁଳ ଖୁସି ହୋଇ ସମ୍ମତି ଦେଲେ ।

ବୁଦ୍ଧଦେବ ତାଙ୍କର ଅନ୍ୟତମ ପ୍ରଧାନ ଶିଷ୍ୟ ସାରିପୁତ୍ରଙ୍କୁ କହିଲେ, ରାହୁଳଙ୍କୁ ଦୀକ୍ଷା ଦିଅ ।'

ରାହୁଳ ଦୀକ୍ଷା ନେଇଥିବା ସମ୍ବାଦ ରାଜା ଶୁଦ୍ଧୋଦନଙ୍କ ପାଖରେ ପହଞ୍ଚିଲା । ସେ ଦୁଃଖରେ ମ୍ରିୟମାଣ ହେଲେ । ସଙ୍ଗେ ସଙ୍ଗେ ଯାଇ ବୁଦ୍ଧଦେବଙ୍କୁ କହିଲେ, ତୁମେ ନିଜେ ସିଂହାସନ ତ୍ୟାଗ କରି ସନ୍ୟାସୀ ହେଲ ତାପରେ ସିଂହାସନରେ ବସିବାକୁ ଯାଉଥିବା ନନ୍ଦକୁ ମଧ୍ୟ ସନ୍ନ୍ୟାସୀ କଲ । ବର୍ତ୍ତମାନ ରାହୁଳକୁ ମଧ୍ୟ ଛଡ଼ାଇ ନେଉଛ । ମୋ ପାଇଁ ଆଉ କାହାକୁ ରଖିଗଲ ?

ଦୟାଶୀଳ ବୁଦ୍ଧଦେବ ଶୁଦ୍ଧୋଦନଙ୍କ କଥାର ଯଥାର୍ଥତା ହୃଦୟଙ୍ଗମ କଲେ । ସେ ନିୟମ କରିଦେଲେ ଯେ ପିତାମାତା ବା ଅଭିଭାବକଙ୍କ ଅନୁମତି ବିନା କୌଣସି ତରୁଣ ସନ୍ନ୍ୟାସୀଙ୍କୁ ଦୀକ୍ଷା-ଦାନ କରାଯାଇ ପାରିବ ନାହିଁ ।

## ଜେତବନରେ ବୁଦ୍ଧଦେବ

ସେତେବେଳେ ଶ୍ରାବସ୍ତି ଏକ ବିଖ୍ୟାତ ନଗରୀ ଥିଲା । ସେଠାରେ 'ସୁଦତ୍ତ' ନାମରେ ଜଣେ ଧନୀ ବଣିକ ବାସ କରୁଥିଲେ ।

ଶ୍ରାବସ୍ତିରେ 'ଜେତବନ' ନାମରେ ଏକ ସୁନ୍ଦର ଉଦ୍ୟାନ ଥିଲା । ସୁଦତ୍ତ ଉକ୍ତ ଜେତବନକୁ ବୁଦ୍ଧଙ୍କୁ ସମର୍ପଣ କରିବାକୁ ଇଚ୍ଛା କଲେ ।

କିନ୍ତୁ ଜେତବନର ମାଲିକ ଥିଲେ, 'ଜେତ' ନାମକ ଜଣେ ରାଜପୁତ୍ର ।

ରାଜପୁତ୍ର ଜେତ ସୁଦତ୍ତଙ୍କ ଇଚ୍ଛା କଥା ଶୁଣି କହିଲେ, ଯଦି ସୁଦତ୍ତ ଉକ୍ତ ଉଦ୍ୟାନକୁ ସୁନାରେ ସଜାଇ ପାରିବେ, ତାହାହେଲେ ବୁଦ୍ଧଦେବଙ୍କୁ ତାହା ସମର୍ପଣ କରାଯାଇ ପାରିବ ।

ରାଜପୁତ୍ର ଜେତଙ୍କ କଥା ଶୁଣି ସୁଦତ୍ତ ତାଙ୍କର ସମସ୍ତ ସମ୍ପତ୍ତି ବିକ୍ରୟ କରି ସୁନା କିଣିଲେ ଓ ଉଦ୍ୟାନକୁ ସଜାଇବାକୁ ଲାଗିଲେ । କିନ୍ତୁ ତହିଁରେ ଅଧେ ଅଂଶ ମଧ୍ୟ ସଜା ହୋଇ ପାରିଲା ନାହିଁ ।

ରାଜପୁତ୍ର ଜେତ ସୁଦତ୍ତଙ୍କ ଆନ୍ତରିକତାରେ ମୁଗ୍‌ଧ ହୋଇ ନିଜ ଅର୍ଥରେ ଜେତବନର ଅନ୍ୟ ଏକ ଅଂଶକୁ ସୁନାରେ ସଜାଇ ଦେଲେ । ତାପରେ ବୁଦ୍ଧଦେବଙ୍କୁ ଜେତବନକୁ ନିମନ୍ତ୍ରଣ କରି ଅଣାଗଲା ।

ବୁଦ୍ଧଦେବ ଜେତବନରେ ଅବସ୍ଥାନ କରି ତାଙ୍କର ଶିଷ୍ୟ-ମାନଙ୍କୁ ବହୁତ ମୂଲ୍ୟବାନ ଉପଦେଶମାନ ଦେଇଥିବା ଜଣାଯାଏ ।

## କିସ୍‌ସା ଗୌତମୀର ମୃତପୁତ୍ର ଓ ବୁଦ୍ଧଦେବ

ବୁଦ୍ଧଦେବ ଜେତବନରେ ଥିବା ସମୟରେ କିସ୍‌ସା ଗୌତମୀ ନାମରେ ଜଣେ ସଂଭ୍ରାନ୍ତ ଘରର ମହିଳା ତାଙ୍କର ଏକମାତ୍ର ଶିଶୁ ପୁତ୍ରକୁ ହରାଇ ବସିଲେ । ସେ ସେହି ମୃତ ଶିଶୁକୁ କୋଳରେ ଧରି ବୁଦ୍ଧଦେବଙ୍କ ପାଖକୁ ଆସିଲେ ଓ ତାକୁ ଜୀବନଦାନ କରିବାକୁ କରୁଣ ନିବେଦନ କଲେ ।

ବୁଦ୍ଧଦେବ ସବୁକଥା ଶୁଣିବା ପରେ, କିସ୍‌ସାଙ୍କୁ କିଛି ସୋରିଷ ଆଣିବାକୁ କହିଲେ । ସେ ପ୍ରତିଶ୍ରୁତି ଦେଲେ ଯେ, ସେହି ସୋରିଷରେ ମୃତ ପୁତ୍ରକୁ ବଞ୍ଚାଇ ଦେବେ । କିନ୍ତୁ, ସର୍ତ୍ତ ରଖିଲେ, ଏପରି ଘରୁ ସୋରିଷ ସଂଗ୍ରହ କରି ଆଣିବ, ଯେଉଁ ଘରେ କେହି କେବେ ମରିନାହିଁ ।

କସ୍ସା ଗୌତମୀ ନିଜ ପୁତ୍ରର ଜୀବନ ନିମନ୍ତେ ସୋରିଷ ସଂଗ୍ରହ ପାଇଁ ବାହାରିଲେ । ବହୁ ଘର, ବହୁ ସ୍ଥାନ ବୁଲି ଦେଖିଲେ ଏପରି ଏକ ଘର ନାହିଁ, ଯେଉଁଠି କେହି କେବେ ମରିନାହିଁ ।

ଏହାପରେ କସ୍ସା ଗୌତମୀ ଆପେ ଆପେ ବୁଝିଗଲେ ଯେ, ବୁଦ୍ଧଦେବ କାହିଁକି ତାଙ୍କୁ ସେପରି କହିଥିଲେ । ସେ ଏଥର ମୃତ ଶିଶୁ ପୁତ୍ରକୁ ନିଜେ ଶ୍ମଶାନକୁ ନେଇଗଲେ । ତାକୁ ଚିତା ଉପରେ ଶୁଆଇ କହିଲେ, ପୁଅ ମୋର ! ପୃଥିବୀରେ ଯେତେଲୋକ ମରିଛନ୍ତି, ସେମାନେ ସମସ୍ତେ ମୋରପରି କୌଣସି ନାଁ କୌଣସି ମାଆର ସନ୍ତାନ ଥିଲେ । ସେମାନଙ୍କ ମୃତ୍ୟୁ ପାଇଁ, ମାଆମାନେ କିଛି କରି ପାରିନଥିଲେ ।

ସେଦିନ ସନ୍ଧ୍ୟାରେ କସସା ଗୌତମୀଙ୍କୁ ଦେଖି ବୁଦ୍ଧଦେବ ପ୍ରଶ୍ନ କଲେ, ସୋରିଷ ପାଇଲ ତ ?

କସ୍ସା କହିଲେ, ସୋରିଷ ପାଇଲି ନାହିଁ ସତ ଆପଣଙ୍କ ବାଣୀ ପାଇଲି ।

ବୁଦ୍ଧଦେବ ବୁଝିଲେ କସ୍ସାଙ୍କ ଜ୍ଞାନ ଉଦୟ ହୋଇଛି । ସେ ତାଙ୍କୁ ଧର୍ମ ଉପଦେଶ ଦେଲେ ।

## ଅଙ୍ଗୁଳିମାଳ ଓ ବୁଦ୍ଧଦେବ

ଦିନେ ବୁଦ୍ଧଦେବ ଏକାକୀ ଅରଣ୍ୟ ପଥରେ ଯାତ୍ରା କଲା ବେଳେ ତାଙ୍କୁ 'ଅଙ୍ଗୁଳିମାଳ' ହାବୁଡ଼ରେ ପଡ଼ିଗଲେ ।

ଅଙ୍ଗୁଳିମାଳ ସେତେବେଳେ ବନା ବସ୍ତିରେ ଲୋକମାନଙ୍କୁ ମାରି ହାଣି ଲୁଣ୍ଠନ କରୁଥାଏ ଓ ସେମାନଙ୍କ ହସ୍ତର ଅଙ୍ଗୁଳିରେ

ମାଳ ଭଳି ବେକରେ ପିନ୍ଧିଥାଏ । କେହି କେହି ତାକୁ ଡରି ନିଜ ହାତରୁ ଅଙ୍ଗୁଳି କାଟି ତାକୁ ଭେଟି ଦେଉଥାନ୍ତି । ଅଙ୍ଗୁଳିମାଳ ଗେରୁଆ ଲୁଗା ପିନ୍ଧିଥିବା ବୁଦ୍ଧଦେବଙ୍କୁ ଦେଖି ଭାବିଲା, ସେ ସେହି ଲୁଗା ଭିତରେ କତି ଲୁଚାଇ ରଖିଛନ୍ତି । କିନ୍ତୁ ବୁଦ୍ଧଦେବ ଭିକ୍ଷା ପାତ୍ରହିଁ ଧରିଥିଲେ ।

ଅଙ୍ଗୁଳିମାଳ କର୍କଶ କଣ୍ଠରେ କହିଲା, ଜୀବନପ୍ରତି ଲୋଭ ଥିଲେ, ଗେରୁଆ ଲୁଗା ଭିତରୁ ଜିନିଷ ବାହାର କର ।

ବୁଦ୍ଧଦେବ ହସି ହସି ଅଙ୍ଗୁଳିମାଳ ହାତକୁ ଭିକ୍ଷାପାତ୍ରଟିକୁ ବଢ଼ାଇ ଦେଲେ ।

ଅଙ୍ଗୁଳିମାଳ ଗର୍ଜିଉଠି କହିଲା, ସାହସ ତ କମ୍ ନୁହେଁ । ମୋ ହାତକୁ ଖାଲି ଭିକ୍ଷାପାତ୍ର ବଢ଼ାଇଦେଲ । ତୁ ଜାଣୁ ମୁଁ କିଏ ? ତୋର କଣ ଭୟ ନାହିଁ ?

ବୁଦ୍ଧଦେବ ସେହିପରି ହସି ହସି କହିଲେ, ତୁମେ ମଣିଷ । ମୁଁ ମଧ୍ୟ ମଣିଷ । ମଣିଷକୁ ମଣିଷ ଡରିବ କାହିଁକି ? ତୁମେ ମୋତେ ମାରିବ ବୋଲି ଧମକ ଦେଉଛ । ଜାଣିରଖ ମୃତ୍ୟୁ ଦିନେ ନା ଦିନେ ଆସିବ । କେହି ଅମର ହୋଇ ରହିନାହିଁ କି ରହିବେ ନାହିଁ । ମୁଁ ତୁମ ହାତରେ ମରିବାକୁ ରାଜିଅଛି । ମୁଁ ହସି ହସି ମରି ପାରିବ । କିନ୍ତୁ ତୁମେ କଣ ମୋପରି ହସି ହସି ମରି ପାରିବ ? ମୁଁ କୌଣସି ପ୍ରାଣୀକୁ କଷ୍ଟ ଦେଇ ନାହିଁ ବୋଲି ଆନନ୍ଦରେ ମରି ପାରିବ । ତୁମେ କିନ୍ତୁ ପାରିବ ନାହିଁ ।

ବୁଦ୍ଧଦେବଙ୍କ କଥା ଶୁଣି ଅଙ୍ଗୁଳିମାଳର ମଥା ଘୁରିଗଲା । ସେ ହୁଏତ ସତକଥା କହୁଛନ୍ତି, ନିଜ କଥା ଭାବି ଅଙ୍ଗୁଳିମାଳ ନିରବ ରହିଲା ।

ବୁଦ୍ଧଦେବ ଅଙ୍ଗୁଳିମାଳର ମନର କଥା ବୁଝିନେବାପରେ କହିଲେ, ଅନୁତାପ କର ଓ ଅହିଂସା ଆଚରଣ କରିବାକୁ ଶପଥ ନିଅ । ତୁମେ ସକଳ ପାପରୁ ମୁକ୍ତ ପାଇ ଆନନ୍ଦରେ ଜୀବନଯାପନ କରିବ ।

ଅଙ୍ଗୁଳିମାଳ ବୁଦ୍ଧଙ୍କ କଥା ଶୁଣୁଥିଲା । ଭାବିଲା, ତାଙ୍କ ଆଗରେ ମୃତ୍ୟୁକୁ ଭୟ ନକରି ଯିଏ ଛିଡ଼ା ହୋଇଛନ୍ତି ଓ ତାଙ୍କୁ ଧର୍ମର କଥା ଶୁଣାଉଛନ୍ତି ଯିଏ ସେହି କରୁଣାମୟ ବୁଦ୍ଧ ନୁହନ୍ତି ତ ? ସେ ଆଉ ଅପେକ୍ଷା ନକରି ବୁଦ୍ଧଦେବଙ୍କ ପାଦତଳେ ପଡ଼ି ଯୋଡ଼ ହସ୍ତରେ ଉଚ୍ଚାରଣ କଲା —

'ବୁଦ୍ଧଂ ଶରଣଂ ଗଚ୍ଛାମି ।'

ବୁଦ୍ଧ ହସି ହସି କହିଲେ, ଭୟ ନାହିଁ । ମୁଁ ବୁଦ୍ଧ । ତୁମ ପାଇଁ ତୁମ ପାଖକୁ ଆସିଛି । ତୁମ ମୁକ୍ତିର ରାସ୍ତା ବତାଇ ଦେଉଛି । ଧର୍ମ ଓ ସଙ୍ଘର ଶରଣ ନିଅ । ମୁଁ ତୁମକୁ ଆଶୀର୍ବାଦ କରୁଛି ।

ଅଙ୍ଗୁଳିମାଳ ଏହାପରେ ନିଜେ ଓ ନିଜର ଅନୁଚରମାନଙ୍କୁ ସଂଘ ସଙ୍ଗେ ସାମିଲ୍ କରି ଦେଇଥିଲା ।

ଏହି ଅଦ୍ଭୁତ ଘଟଣାପରେ ବହୁ ଲୋକ ବୁଦ୍ଧଙ୍କର ଆଶୀର୍ବାଦ ନେଇ ସଙ୍ଘରେ ଯୋଗ ଦେଇଥିଲେ ।

## ପିତା ଶୁଦ୍ଧୋଦନଙ୍କ ମୃତ୍ୟୁ

ବୁଦ୍ଧଦେବ ବୈଶାଳୀ ନଗରୀରେ ଥିଲାବେଳେ ଶୁଣିଲେ, ପିତା ଶୁଦ୍ଧୋଦନ ଅସୁସ୍ଥ ଅଛନ୍ତି । ସେ ଜାଣି ପାରିଲେ, ପିତାଙ୍କର

ମୃତ୍ୟୁ ସମୟ ଆସି ପହଞ୍ଚିଗଲା । ସେ ବୈଶାଳୀରୁ କପିଳବାସ୍ତୁ ଯାତ୍ରା କଲେ ଓ ପିତାଙ୍କୁ ସାକ୍ଷାତ କଲେ । ପିତାଙ୍କର ମୃତ୍ୟୁର କିଛି ସମୟ ଆଗରୁ ତାଙ୍କର ଅନୁରୋଧକ୍ରମେ ଧର୍ମୋପଦେଶ ଶୁଣାଇଲେ । ଏହାପରେ ଶୁଦ୍ଧୋଦନ ଚିର ନିଦ୍ରାଗଲେ ।

## ବୁଦ୍ଧଦେବଙ୍କ ସମର୍ଥନ ଓ ବିରୋଧ

ବୌଦ୍ଧଧର୍ମର ମୂଳ ମନ୍ତ୍ର ଥିଲା ଅହିଂସା । ଏହି ଧର୍ମର ଲୋକମାନେ ଜାତିଭେଦ ମାନୁ ନଥିଲେ । ବ୍ରାହ୍ମଣ ପୁରୋହିତ, ବଳି ପ୍ରଥାର ଘୋର ବିରୋଧ କରୁଥିଲେ । କହୁଥିଲେ, ପୃଥିବୀର ସବୁ ମଣିଷ ସମାନ । ଧନୀ ଦରିଦ୍ର, ବ୍ରାହ୍ମଣ ଚଣ୍ଡାଳ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

ଫଳରେ ବୌଦ୍ଧଧର୍ମ ପ୍ରତି ସର୍ବସାଧାରଣଙ୍କ ଆଗ୍ରହ ବଢିଲା । ଏ ଧର୍ମ ସବୁଠି ପ୍ରିୟ ହେଲା । ବୁଦ୍ଧଦେବଙ୍କ ଯଶ ଚାରିଆଡ଼କୁ ବ୍ୟାପିଗଲା । ସେ ସମାଜର ନିମ୍ନସ୍ତରରେ ଥିବା ଲୋକମାନଙ୍କୁ କରୁଣା ପ୍ରଦର୍ଶନ କରୁଥିଲେ । ସେମାନଙ୍କୁ ଧର୍ମ ଉପଦେଶ ଦେଇ ସଂଘରେ ସାମିଲ କରି ନେଉଥିଲେ ।

ଚାରିଆଡ଼େ ତାଙ୍କର ସୁଖ୍ୟାତି ବଢ଼ିବା ସଙ୍ଗେ ସଙ୍ଗେ କେତେବେଳେ ତାଙ୍କ ନାମରେ ଦୁର୍ନାମ ରଟନା କରି ପଦେ ପଦେ ବିରୋଧ କରିବାକୁ ଲାଗିଲେ ।

## 'ଦେବଦତ୍ତ'ଙ୍କ ବିରୋଧ

ବୁଦ୍ଧଦେବଙ୍କ ଜ୍ଞାତି ଭାଇ 'ଦେବଦତ୍ତ' ବୁଦ୍ଧଙ୍କ ପ୍ରଶଂସା ଶୁଣି ଈର୍ଷାରେ ଜଳି ଯାଉଥିଲେ । ସେ ପିଲାଦିନରୁ ବୁଦ୍ଧଦେବଙ୍କର ଶତ୍ରୁ ଥିଲେ ।

ବାଲ୍ୟକାଳରେ ବୁଦ୍ଧଦେବ ଗୌତମ ନାମରେ ପରିଚିତ ଥିଲାବେଳେ, ଥରେ ଏକାଏକା ବସି ଚିନ୍ତା କରୁଛନ୍ତି, ଗୋଟିଏ ତୀରବିଦ୍ଧ ପକ୍ଷୀ ଆସି ତାଙ୍କ ପାଦତଳେ ପଡ଼ିଲା । ପକ୍ଷୀର କଷ୍ଟ ଦେଖି ଗୌତମଙ୍କ ଆଖିରୁ ଲୁହ ବୋହିଲା । ସେ ତା' ଦେହରୁ ତୀର କାଢ଼ି କ୍ଷତ ସ୍ଥାନରେ ପତ୍ର ରସ ଲଗାଇ ତାର ସେବା ଶୁଶ୍ରୂଷା କରି ସୁସ୍ଥ କଲେ । ଏହି ସମୟରେ 'ଦେବଦତ୍ତ' ଆସି ଗୌତମଙ୍କୁ ପକ୍ଷୀଟିକୁ ଫେରାଇ ଦେବାପାଇଁ ବାଧ୍ୟ କଲେ ।

ବୁଦ୍ଧଦେବ ଆହତ ପକ୍ଷୀକୁ ଦେବଦତ୍ତଙ୍କୁ ଫେରାଇଲେ ନାହିଁ । ଶେଷରେ ରାଜଦରବାରକୁ କଥା ଗଲା ।

ଦେବଦତ୍ତ ଓ ଗୌତମଙ୍କ କଥା ଶୁଣିବା ପରେ ଦରବାରର ସମସ୍ତେ କହିଲେ, ଯିଏ ଜୀବନ ରକ୍ଷାକଲା, ପକ୍ଷୀ ଉପରେ ତାର ହିଁ ଅଧିକାର ।

ଗୌତମ ଏହା ଶୁଣି ଖୁସି ହେଲେ । କିନ୍ତୁ ଦେବଦତ୍ତ ସେହି ଦିନଠାରୁ ଗୌତମଙ୍କର ଶତ୍ରୁ ରୂପେ ଦେଖାଦେଲେ । ଗୌତମଙ୍କୁ ଯେ କୌଣସି ଉପାୟରେ ଅଡୁଆରେ ପକାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ଏହି ବିରୋଧ ଭାବ ବୟସ ବଢ଼ିବା ସଙ୍ଗେ ସଙ୍ଗେ ତୀବ୍ର ଆକାର ଧାରଣ କରିଥିଲା ।

## ଗୌତମଙ୍କ ବିବାହ ବେଳର କଥା

ଗୌତମ ସର୍ବଦା ଚିନ୍ତାମଗ୍ନ ରହୁଥିବା ଦେଖି ଶୁଦ୍ଧୋଦନ ତାଙ୍କୁ ବିବାହ ବନ୍ଧନରେ ବାନ୍ଧି ଦେବାକୁ ଚାହିଁଲେ । ସେମାନେ ମନେ ମନେ ସୁଯୋଗ୍ୟା ପାତ୍ରୀଟିଏ ଖୋଜିବାକୁ ଲାଗିଲେ ।

ଥରେ ଗୌତମଙ୍କ ଜନ୍ମଦିନ ପାଳନ ଉଦ୍ଦେଶ୍ୟରେ ଶୁଦ୍ଧୋଦନ ବହୁ ରାଜା ଓ ସାମନ୍ତ କନ୍ୟାମାନଙ୍କୁ ନିମନ୍ତ୍ରଣ କଲେ ।

ଉତ୍ସବ ଆରମ୍ଭ ହେଲା । ସୁନ୍ଦରୀ ନର୍ତ୍ତକୀମାନେ ନୃତ୍ୟ କଲେ । ସୁନ୍ଦରୀ କନ୍ୟମାନେ ସଂଗୀତ ଶୁଣାଇଲେ । ଉତ୍ସବ ଶେଷରେ ଶୁଦ୍ଧୋଦନଙ୍କ ପରାମର୍ଶ ଅନୁସାରେ ଗୌତମ ନିଜ ହସ୍ତରେ ସମବେତ କନ୍ୟାମାନଙ୍କୁ କିଛି ନା କିଛି ଉପହାର ପ୍ରଦାନ କଲେ ।

ଉପହାର ପ୍ରଦାନ ଶେଷକରି ଗୌତମ ନିଜ ଆସନରୁ ଉଠି ଗଲା ପାଇଁ ଚାହାନ୍ତି, ସେ ଦେଖିଲେ ଏକ ସୁନ୍ଦରୀ କନ୍ୟା ସ୍ତମ୍ଭ ଆଢୁଆଳରେ ଶୂନ୍ୟ ହସ୍ତରେ ଛିଡ଼ା ହୋଇଛି । ଏହା ଦେଖି ସିଦ୍ଧାର୍ଥ ନିଜ ଗଳାରୁ ରତ୍ନ ହାର କାଢ଼ି ସେ କନ୍ୟାକୁ ଦାନ କଲେ ।

ଉକ୍ତ କନ୍ୟା ଥିଲେ ଏକ ସାମନ୍ତ ରାଜାଙ୍କ କନ୍ୟା । ତାଙ୍କର ସୌନ୍ଦର୍ଯ୍ୟ ଓ ଲଜ୍ଜାଭାବ ଦେଖି ଗୌତମ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିବା ମନେ ହେଲା । ଫଳରେ ସମସ୍ତେ ବୁଝିଲେ, ଉକ୍ତ କନ୍ୟା ଗୌତମଙ୍କୁ ପସନ୍ଦକୁ ଆସିଛି । ତେଣୁ ସେହି କନ୍ୟା ସଙ୍ଗରେ ଗୌତମଙ୍କର ବିବାହ ପ୍ରସ୍ତାବ ହେଲା ।

କିନ୍ତୁ ଏଥିରେ ବାଧା ସାଧିଲେ ଦେବଦତ୍ତ । ସେ କହିଲେ, କନ୍ୟାଲାଭ ନିମନ୍ତେ ପ୍ରତିଯୋଗିତା ଆବଶ୍ୟକ । ଯିଏ ଜିତିବ, ସେ ଉକ୍ତ କନ୍ୟା ଲାଭ କରିବ । ଶେଷରେ ଦେବଦତ୍ତଙ୍କ କଥା ରହିଲା ।

କପିଳବାସ୍ତୁରେ ବିଭିନ୍ନ ପ୍ରକାର ପ୍ରତିଯୋଗିତାର ଆୟୋଜନ କରାଗଲା । ଗୌତମ ସକଳ ପ୍ରକାର ପ୍ରତିଯୋଗିତାରେ ପ୍ରତିଦ୍ୱନ୍ଦୀ ଦେବଦତ୍ତଙ୍କୁ ପରାସ୍ତ କରି ସୁନ୍ଦରୀ କନ୍ୟା ଯଶୋଧାରାଙ୍କ ପାଣିଗ୍ରହଣ

କରୁଥିଲେ । ଏଥିରେ ସମସ୍ତେ ଆନନ୍ଦ ପ୍ରକାଶ କରୁଥିଲେହେଁ, ଦେବଦତ୍ତ ଈର୍ଷାରେ ଜଳିଗଲେ ।

## ଦେବଦତ୍ତଙ୍କ ଈର୍ଷା

ଏହିପରି ଭାବରେ ଦେବଦତ୍ତ ବୁଦ୍ଧଦେବଙ୍କର ଆଜନ୍ମ ଶତ୍ରୁ ଥିଲେ । ବିନା କାରଣରେ ବାଉ ସାଧିବାକୁ ସର୍ବଦା ଚେଷ୍ଟା କରୁଥିଲେ ।

କ୍ରମେ ବୁଦ୍ଧଦେବଙ୍କର ପ୍ରଶଂସା ଶୁଣି ଈର୍ଷାରେ ପାଗଳ ହୋଇଗଲେ ।

ସେତେବେଳେ ମଗଧର ରାଜା ଥିଲେ ବିମ୍ବିସାର । ସେ ବୁଦ୍ଧଦେବଙ୍କ ଧର୍ମରେ ଦୀକ୍ଷିତ ହୋଇଥିବା ବିଷୟ ଆଗରୁ ବର୍ଣ୍ଣନା କରାଯାଇଛି । ରାଜା ବିମ୍ବିସାର ବୁଦ୍ଧଦେବଙ୍କୁ ଭଗବାନ ବୋଲି ମାନୁଥିଲେ । ଏହା ଶୁଣି ଦେବଦତ୍ତ ଏକ ଚକ୍ରାନ୍ତ କଲେ ।

ମଗଧର ରାଜପୁତ୍ର 'ଅଜାତଶତ୍ରୁ' ଦେବଦତ୍ତଙ୍କର ବନ୍ଧୁ ଥିଲେ । ଦେବଦତ୍ତ ଭାବିଲେ ଅଜାତଶତ୍ରୁ ଯଦି ମଗଧର ରାଜା ହୁଅନ୍ତେ ତାହାହେଲେ ମଗଧ ରାଜ୍ୟରେ ବୁଦ୍ଧଦେବଙ୍କ ପ୍ରଭାବକୁ କମାଇ ଦିଆଯାଇପାରନ୍ତା । ପୁଣି ଅଜାତଶତ୍ରୁଙ୍କ ସାହାଯ୍ୟରେ ବୁଦ୍ଧଦେବଙ୍କ ଅବସ୍ଥା ଅଚଳ କରାଯାଇପାରନ୍ତା । ତେଣୁ ସେ ଅଜାତଶତ୍ରୁଙ୍କୁ ଗୋପନରେ ରାଜା ବିମ୍ବିସାରଙ୍କୁ ହତ୍ୟାକରି ସିଂହାସନ ହାସଲ କରିବାକୁ ମତାଇଲେ ।

ଅଜାତଶତ୍ରୁ ଦେବଦତ୍ତଙ୍କ ସଙ୍ଗରେ ମାତି ଦିନେ ରାଜା ବିମ୍ବିସାରଙ୍କ ଶୋଇବା ଘରେ ଲୁଚି ଲୁଚି ପଶିଲେ । ହାତରେ

ତାଙ୍କର ତରବାରି ଥିଲା । ରାଜା ବିମ୍ବିସାର ଶୋଇଥିବା ଦେଖି, ସେ ଆନନ୍ଦରେ ତରବାରି ଉଠାଇ ତାଙ୍କୁ ହତ୍ୟା କରିବାକୁ ବାହାରିଲେ । ଠିକ୍ ସେହି ସମୟରେ ଜଣେ ପହରାଦାର ସେହି ଘରେ କୌଣସି କାର୍ଯ୍ୟରେ ପ୍ରବେଶ କରି ଅଜାତଶତ୍ରୁଙ୍କୁ ଦେଖି ସେ ନଅରର ସମସ୍ତଙ୍କୁ ସତର୍କ କରି ଦେବା ପାଇଁ ଖୁବ୍ ଜୋରରେ ପାଟିକଲା ।

ପହରାଦାରର ପାଟି ଶୁଣି ରାଜାଙ୍କର ଦେହରକ୍ଷୀମାନେ ଆସିଲେ ଓ ଆତତାୟୀଙ୍କୁ କାବୁ କଲେ । ଯେତେବେଳେ ସେମାନେ ଆତତାୟୀକୁ ଚିହ୍ନିନେଲେ, ସେତେବେଳେ ସେମାନଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ଏହାପରେ ଅଜାତଶତ୍ରୁ ଅନୁତାପରେ ଭାଙ୍ଗି ପଡ଼ିଲେ । ସେ ସମସ୍ତଙ୍କ ସାମନାରେ ସ୍ୱୀକାର କଲେ ଯେ ଦେବଦତ୍ତଙ୍କ ପ୍ରରୋଚନାରେ ସେ ପିତା ବିମ୍ବିସାରଙ୍କୁ ହତ୍ୟା କରିବାକୁ ବାହାରିଥିଲେ । ସିଂହାସନରେ ବସିବାପରେ ବୁଦ୍ଧଦେବଙ୍କୁ ଅପଦସ୍ତ କରିବାକୁ ଦେବଦତ୍ତର ଚକ୍ରାନ୍ତ ଥିଲା ।

ଅଜାତଶତ୍ରୁଙ୍କ ସ୍ୱୀକାରୋକ୍ତି ଶୁଣିବାପରେ, ରାଜଦରବାରରେ ତାଙ୍କୁ ଦୋଷୀ ସାବ୍ୟସ୍ତ କଲେ ।

କିନ୍ତୁ ରାଜା ବିମ୍ବିସାର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଘୋଷଣା କଲେ, ସେ ସିଂହାସନ ତ୍ୟାଗ କରିବାକୁ ଇଚ୍ଛା କରନ୍ତି । ଅଜାତଶତ୍ରୁଙ୍କୁ ରାଜ୍ୟଭାର ଅର୍ପଣ କରିବା କଥା ମଧ୍ୟ ସେ ଜଣାଇଦେଲେ ।

ବିମ୍ବିସାରଙ୍କ ଘୋଷଣା ଶୁଣି ଅଜାତଶତ୍ରୁ ପିତାଙ୍କର ପାଦତଳେ ପଡି କ୍ଷମାଭିକ୍ଷା କଲେ ।

ଅଜାତଶତ୍ରୁ ଏହାପରେ ମଗଧର ରାଜା ହେଲେ ସତ, କିନ୍ତୁ ଦେବଦତ୍ତଙ୍କ ଉଦ୍ଦେଶ୍ୟ ସାଧନ ହୋଇ ପାରିଲା ନାହିଁ । ସେ ବୌଦ୍ଧଧର୍ମ ଓ ଜୈନଧର୍ମ, ଏହି ଉଭୟ ଧର୍ମର ପୃଷ୍ଠପୋଷକତା କଲେ । ତାଙ୍କର ଚରିତ୍ରରେ ମଧ୍ୟ ଅଦ୍ଭୁତ ପରିବର୍ତ୍ତନ ଦେଖା ଦେଲା । ସେ ଶାନ୍ତ, ଶିଷ୍ଟ ମଣିଷରେ ପରିଣତ ହେଲେ ।

## ବୁଦ୍ଧଦେବଙ୍କୁ ହତ୍ୟା ଉଦ୍ୟମ

ଦେବଦତ୍ତ ଆଉ ଅଜାତ ଶତ୍ରୁଙ୍କର ସାହାଯ୍ୟ ସହୋଯୋଗ ପାଇଲା ନାହିଁ । ସେ ଏକା ଏକା ବୁଦ୍ଧଦେବଙ୍କୁ ହତ୍ୟା କରିବାକୁ ଉଦ୍ୟମ କଲା ।

ଥରେ ବୁଦ୍ଧ ଏକ ପାର୍ବତ୍ୟ ଅଞ୍ଚଳରେ ଯାତ୍ରା କରୁଥିବା ଦେଖି, ଦେବଦତ୍ତ ପର୍ବତ ଉପରକୁ ଉଠିଗଲା । ପର୍ବତ ଶିଖରରେ ଛିଡ଼ାହୋଇ ସେ ତଳକୁ ଏକ ମସ୍ତବଡ଼ ପଥର ଖସାଇ ଦେଲା । ଉଦ୍ଦେଶ୍ୟ ଥିଲା, ବୁଦ୍ଧଦେବ ସେହି ପଥର ତଳେ ଚୂପି ହୋଇ ମୃତ୍ୟୁବରଣ କରିବେ ।

କିନ୍ତୁ ବିଧିର ବିଧାନ ବିଚିତ୍ର । ଦେବ ଯୋଗକୁ ସେହି ପଥର ସଙ୍ଗରେ ଆଉ ଏକ ମସ୍ତବଡ଼ ପଥର ଆପଣା ଛାଏଁ ଖସି ଖସି ଆସି, ଦେବଦତ୍ତ ଗଡ଼ାଇ ଥିବା ପଥରକୁ ଧକ୍କା ଦେଲା । ତେଣୁ ସେହି ପଥର ସିଧାରେ ନ ଖସି ବଙ୍କେଇ ଗଲା ଓ ବୁଦ୍ଧଦେବଙ୍କ ଦେହରେ ବାଜିଲା ନାହିଁ ।

ବୁଦ୍ଧଦେବ ଏହିପରି ଭାବରେ ଆସନ୍ନ ବିପଦରୁ ରକ୍ଷା ପାଇଗଲେ । ତେବେ ସେହି ବଡ଼ପଥର ଦେହରୁ ଖଣ୍ଡେ ଛିଟିକି ଆସି ବୁଦ୍ଧଦେବଙ୍କ ପାଦକୁ ଆଘାତ କଲା ।

# ନୀଳ ହାତୀ ଓ ବୁଦ୍ଧଦେବ

ଦେବଦତ୍ତ ବୁଦ୍ଧଦେବଙ୍କୁ ଜୀବନରେ ମାରିଦେବାକୁ ଆଉ ଏକ ଚକ୍ରାନ୍ତ କଲେ ।

ସେତେବେଳେ ପାଟଳୀପୁତ୍ର ନଗରୀରେ 'ନୀଳଗିରି' ନାମରେ ଏକ ବିଶାଳକାୟ ହାତୀଥିଲା । ସେ ହାତୀ ବେଳେବେଳେ ଉନ୍ମତ୍ତ ହୋଇ ମଣିଷମାନଙ୍କୁ ଦଳି ଚକଟି ପକାଉ ଥିଲା ।

ଦେବଦତ୍ତ ଯାଇ ନୀଳହାତୀର ମାହୁନ୍ତ ପାଖରେ ପହଞ୍ଚିଲେ । ସେ ମାହୁନ୍ତକୁ ଉତ୍କୋଚ ଦେଇ ରାଜି କରାଇଲେ ଯେ, ହାତୀକୁ ନିଶା ଖୁଆଇ ବୁଦ୍ଧଙ୍କୁ ମଡ଼ାଇ ଦେବ ।

ଯେତେବେଳେ ବୁଦ୍ଧଦେବ ରାଜରାସ୍ତାରେ ଚାଲି ଯାଉଥିଲେ ସେତେବେଳେ ମାହୁନ୍ତ ନୀଳହାତୀକୁ ନିଶା ଖୁଆଇ ତାଙ୍କ ଆଡକୁ ଛାଡ଼ି ଦେଲା ।

ସେହି ସମୟରେ ପାଟଳୀ ପୁତ୍ରର ଶିଶୁଟିଏ ତା' ମା କୋଳରୁ ଖସିଯାଇ ରାସ୍ତା ଉପରେ ଗୁରୁଣ୍ଡୁ ଥିଲା ଠିକ୍ ଏତିକିବେଳେ ନୀଳହାତୀ ଉନ୍ମତ୍ତ ଅବସ୍ଥାରେ ସେହି ରାସ୍ତାରେ ଚାଲିଥାଏ । ସମସ୍ତେ ଭାବିଲେ, ଶିଶୁଟି ନୀଳହାତୀର ପାଦତଳେ ପଡ଼ି ମରିଯିବ । କିନ୍ତୁ କେହି ତାକୁ ସାହାଯ୍ୟ କରିବା ପାଇଁ ସାହାସ କରି ପାରିଲେ ନାହିଁ । ବୁଦ୍ଧଦେବ ଶିଶୁକୁ ଦେଖି ଧାଇଁବାକୁ ଲାଗିଲେ । ହାତୀ ଓ ବୁଦ୍ଧଦେବ ମୁହାଁ ମୁହିଁ ହୋଇ ଛିଡ଼ା ହେଲେ । ସମସ୍ତେ ଭାବିଲେ, ହାତୀ ଏକ୍ତ ଶିଶୁ ସଙ୍ଗରେ ବୁଦ୍ଧଦେବଙ୍କୁ ମଧ୍ୟ ମାରି ପକାଇବ ।

ବୁଦ୍ଧଦେବ ନୀଳହାତୀକୁ ଆଦେଶ ଦେଲେ, ଶାନ୍ତ ହୁଅ । ଭଦ୍ର ହୁଅ । ବୃଥାରେ ଜୀବନ ନଷ୍ଟ କର ନାହିଁ । ଆଶ୍ଚର୍ଯ୍ୟର ବିଷୟ,

ଏହାପରେ ଉନ୍ମତ୍ତ ନୀଳହାତୀ ବୁଦ୍ଧଦେବଙ୍କ ଆଗରେ ଅଣ୍ଟୁ ମାଡ଼ି ବସି ପଡ଼ିଲା । ମନେହେଲା, ନୀଳହାତୀ ବୁଦ୍ଧଦେବଙ୍କର ଆଶୀର୍ବାଦ ଭିକ୍ଷା କରୁଛି । ବୁଦ୍ଧଦେବ ନୀଳଗିରିକୁ ଆଉଁସି ଦେଲେ । ନୀଳହାତୀ ସେଠିପରି ଶୋଇ ରହିଥାଏ ।

ଏହି ଦୃଶ୍ୟ ଦେଖି ପାଟଳୀ ପୁତ୍ରର ନରନାରୀମାନେ ମନେକଲେ, ବୁଦ୍ଧଦେବ ସାମାନ୍ୟ ମଣିଷ ନୁହନ୍ତି । ନ ହେଲେ ହାତୀ ତାଙ୍କର ବୋଲ ମାନନ୍ତା କିପରି ?

## ସାରିପୁତ୍ର ଓ ମୌଗଲ୍ଲାୟନ

ବୁଦ୍ଧଦେବଙ୍କର ବରିଷ୍ଠ ଶିଷ୍ୟମାନଙ୍କ ମଧ୍ୟରେ ଥିଲେ 'ସାରିପୁତ୍ର' ଓ 'ମୌଗଲ୍ଲାୟନ' । ବୁଦ୍ଧଦେବ ଏମାନଙ୍କୁ ଧର୍ମନୀତି ପ୍ରଚାର କରିବା ପାଇଁ ଅଧିକାର ଦେଇଥିଲେ । ଏଦୁହେଁ ବିଭିନ୍ନ ସ୍ଥାନ ବୁଲି ଧର୍ମ ପ୍ରଚାର କରୁଥିଲେ ।

କିଛି ବର୍ଷପରେ ସାରିପୁତ୍ର ବୁଝିପାରିଲେ ଯେ, ତାଙ୍କର ଅନ୍ତିମ ସମୟ ପାଖେଇ ଆସୁଛି । ସେ ଆସି ବୁଦ୍ଧଙ୍କୁ ଶେଷ ଦର୍ଶନ କଲେ ଓ ମାତାଙ୍କ ନିକଟିକୁ ଯାଇ ତାଙ୍କ ପାଖରେ ପ୍ରାଣତ୍ୟାଗ କଲେ ।

ମୌଗଲ୍ଲାୟନ ହିନ୍ଦୁଧର୍ମ ବିରୋଧୀ ନୂତନ ବୌଦ୍ଧଧର୍ମ ପ୍ରଚାର କରୁଥିବା ଦେଖି ରକ୍ଷଣଶୀଳ ବ୍ୟକ୍ତିମାନେ ତାଙ୍କର ବିରୋଧ କଲେ । ସେମାନେ ତାଙ୍କୁ ଜୀବନରେ ମାରିଦେବା ପାଇଁ ଘାତକ ନିଯୁକ୍ତି କଲେ । କିନ୍ତୁ ଘାତକମାନେ ତାଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ କଲାବେଳେ ଦେଖିଲେ, 'ମୌଗଲ୍ଲାୟନ' ଲଟି ଠାରୁ ଉପରକୁ ଉଠି ଯାଉଛନ୍ତି । ଏହା ଦେଖି ସେମାନେ ବିସ୍ମିତ ହେଲେ ।

ସେହିଭଳି ଆଉ ଏକ ଷଡଯନ୍ତ୍ରର ଶିକାର ହୋଇ ସେ ଘାତକ ମାନଙ୍କ କବଳରେ ପଡ଼ିଲେ । ସେତେବେଳେ ତାଙ୍କର ପୂର୍ବଜନ୍ମର କଥା ମନେ ପଡ଼ିଗଲା । ସେ ସେହି ବିଗତ ସ୍ମୃତିରେ ବୁଡ଼ି ରହିଥିଲା ବେଳେ ତାଙ୍କର ଅଲୌକିକ ପ୍ରଭାବ ଖଟାଇ ପାରିଲେ ନାହିଁ ।

ଜାତିସ୍ମର ମୌଗଲ୍ଲାୟନ ତାଙ୍କ ପୂର୍ବଜନ୍ମର କଥା ସ୍ମରଣ କରୁଥିଲେ । ସେତେବେଳେ ସେ ନିଜର ବୃଦ୍ଧ ପିତାମାତାଙ୍କୁ ମାରିଦେବା ପାଇଁ ବଣକୁ ନେଇ ଯାଇଥିଲେ । ନିଜେ ଛଦ୍ମବେଶ ଧାରଣକରି ସେ ଦୁହିଁଙ୍କୁ ମାରିଦେବା ପାଇଁ ଉଦ୍ୟମ କଲାବେଳେ, ବୃଦ୍ଧ ପିତାମାତା ତାଙ୍କୁ ଡାକି କହିଥିଲେ, ପୁଅ ! ଆମେ ଦସ୍ୟୁ କବଳରେ ପଡ଼ିଛୁ । ତୁ ଆମ ପାଖକୁ ନ ଆସି ପଳାଇଯା ! ପିତା-ମାତାଙ୍କ ମୁହଁରୁ ଏପରି କଥା ଶୁଣି ଅଧମ ପୁତ୍ରର ହୃଦୟରେ ପରିବର୍ତ୍ତନ ଦେଖା ଦେଇଥିଲା । ସେ ପୁଣିଥରେ ବେଶ ବଦଳାଇ, ପିତାମାତାଙ୍କୁ ସାଙ୍ଗରେ ନେଇ ଘରକୁ ଫେରିଥିଲେ ।

ମୌଗଲ୍ଲାୟନ ପୂର୍ବଜନ୍ମର କଥାମନେ ପକାଉଛନ୍ତି । ଘାତକମାନଙ୍କ ପ୍ରହାରରେ ପ୍ରାଣତ୍ୟାଗ କଲେ । ସେ ପୂର୍ବଜନ୍ମର ଅପକର୍ମର ପ୍ରତିଫଳ ଭୋଗ କଲେ ।

କ୍ଷତବିକ୍ଷତ ମୌଗଲ୍ଲାୟନଙ୍କୁ ବୁଦ୍ଧଦେବଙ୍କ ପାଖକୁ ଅଣାଗଲା । ସେ ବୁଦ୍ଧଦେବଙ୍କର ଶେଷ ଦର୍ଶନ କରି ପ୍ରାଣତ୍ୟାଗ କଲେ ।

## ରାଜନର୍ତ୍ତକୀ ଅମ୍ବାପଲ୍ଲୀ

ଅଶିବର୍ଷ ବୟସରେ ବୁଦ୍ଧଦେବ ବୈଶାଳୀ ନଗରୀରେ ପହଞ୍ଚିଲେ । ସେଠାରେ ବୈଶାଳୀର ପରମ ସୁନ୍ଦରୀ ରାଜନର୍ତ୍ତକୀ

ଅମ୍ବାପଲ୍ଲୀ ବାସ କରୁଥିଲେ । ସେ ତାଙ୍କର ଯୌବନ ଓ ନୃତ୍ୟରେ ସମସ୍ତଙ୍କୁ ମୋହିତ କରି ପାରୁଥିଲେ । ବହୁ ଧନୀମାନୀ ଲୋକ ତାଙ୍କର ସଙ୍ଗଲାଭ ପାଇଁ ଆଗ୍ରହୀ ଥିଲେ ଓ ଅକାତରେ ବହୁ ମୂଲ୍ୟବାନ ଅଳଙ୍କାର ଓ ଧନ ରତ୍ନ ଦାନକରି ଦେଉଥିଲେ ।

ବୈଶାଳୀର ଯୁବକ ଓ ବୟସ୍କମାନେ ଅମ୍ବାପଲ୍ଲୀଙ୍କର ଦର୍ଶନ ପାଇଁ ପାଗଳ ହୋଇ ଉଠୁଥିଲେ ।

ଅମ୍ବାପଲ୍ଲୀଙ୍କ ବାସଭବନ ବହୁ ଦାସଦାସୀ ଓ ଧନ ସମ୍ପଦରେ ପରିପୂର୍ଣ୍ଣ ଥିଲା । ସେ ବିଳାସୀ ଜୀବନ ଯାପନ କରୁଥିଲେ । କିନ୍ତୁ ବୁଦ୍ଧଦେବଙ୍କ ପ୍ରଶଂସା ଓ ଖ୍ୟାତି ଶୁଣି ଅମ୍ବାପଲ୍ଲୀଙ୍କ ମନରେ ପରିବର୍ତ୍ତନ ଦେଖାଗଲା । ସେ ଯୌବନ ଓ ଧନ ସମ୍ପଦକୁ ତୁଚ୍ଛ ମନେକରି ବୁଦ୍ଧଙ୍କର ଆଶ୍ରୟ ଗ୍ରହଣ କରିବାକୁ ମନସ୍ଥ କଲେ । ଦିନେ ସେ ନିଜେଯାଇ ବୁଦ୍ଧଦେବଙ୍କୁ ଦର୍ଶନ କଲେ ଓ ତାଙ୍କର ସୁନ୍ଦର ଉଦ୍ୟାନଟିକୁ ଭେଟି ଦେଲେ । ତାପରେ ବୁଦ୍ଧଦେବଙ୍କୁ ଓ ତାଙ୍କର ଶିଷ୍ୟମାନଙ୍କୁ ଆହାର ନିମନ୍ତେ ନିମନ୍ତ୍ରଣ କଲେ ।

ବୁଦ୍ଧଦେବ ସାଦରେ ଅମ୍ବାପଲ୍ଲୀଙ୍କର ନିମନ୍ତ୍ରଣ ରକ୍ଷା କଲେ ଓ ଶିଷ୍ୟମାନଙ୍କ ସଙ୍ଗରେ ଯାଇ ତାଙ୍କ ହାତରୁ ଭିକ୍ଷା ଗ୍ରହଣ କଲେ ।

ବୈଶାଳୀର ବହୁ ବ୍ୟକ୍ତି ପ୍ରକାଶ କଲେ, ବୁଦ୍ଧଦେବ ଗଣିକା ଅମ୍ବାପଲ୍ଲୀର ନିମନ୍ତ୍ରଣ ରକ୍ଷାକରିବା ଉଚିତ ହୋଇନାହିଁ । ଏଥିଦ୍ୱାରା ପାପ ହେଲା ।

ବୁଦ୍ଧଦେବ ଏହି ସମାଲୋଚକମାନଙ୍କୁ ବୁଝାଇ କହିଲେ, ସମୁଦ୍ରରେ ବହୁ ନଦନଦୀ ମିଳିତ ହୁଅନ୍ତି । ସମୁଦ୍ରରେ ଲୀନ

ର୍ବାପରେ ସେମାନଙ୍କର ଅସ୍ତିତ୍ଵ ଆଉ ରହିବ ନାହିଁ । ଯେଉଁମାନେ ମୋ ଧର୍ମର ମର୍ମ ବୁଝିଛନ୍ତି । ସେମାନେ ପାପ ମୁକ୍ତବୋଲି ବିବେଚିତ ହେବେ । ସେମାନେ ମୋ ଧର୍ମ ସଙ୍ଗେ ମିଶିଯିବା ପରେ ସେମାନଙ୍କର ସ୍ଵାତନ୍ତ୍ର୍ୟ ମଧ୍ୟ ରହିବ ନାହିଁ ।

ବୁଦ୍ଧଦେବଙ୍କ ଯୁକ୍ତି ଶୁଣି ସମାଲୋଚକମାନଙ୍କ ମୁହଁବନ୍ଦ ହୋଇ ଯାଇଥିଲା ।

## ବୁଦ୍ଧଦେବଙ୍କ ଅନ୍ତିମ ଜୀବନ

ବୁଦ୍ଧଦେବଙ୍କର ସଂପର୍କୀୟ ଭାଇ ଦେବଦତ୍ତ ବୁଦ୍ଧଦେବଙ୍କୁ ଶେଷ ପର୍ଯ୍ୟନ୍ତ ଶତ୍ରୁ ବୋଲି ମନେ କରୁଥିଲେ ।

ବୁଦ୍ଧଦେବ ଥିଲେ ଭଦ୍ର, ଶାନ୍ତ, ସଂଯତ । କିନ୍ତୁ ଦେବଦତ୍ତ ଥିଲେ କୁଟିଳ ଅଶାନ୍ତ ଓ ଅସଂଯତ । ବୁଦ୍ଧଦେବ ତାଙ୍କର ଶତ୍ରୁମାନଙ୍କୁ ବନ୍ଧୁଭାବରେ ରୂପାନ୍ତରିତ କରିବାକୁ ଚାହୁଁଥିଲେ । କିନ୍ତୁ ଦେବଦତ୍ତ ଯାହାକୁ ଶତ୍ରୁ ରୂପେ ମନେ କରୁଥିଲେ ତାକୁ ଜୀବନରେ ମାରିଦେବା ପାଇଁ ପଛଘୁଞ୍ଚା ଦେଉ ନଥିଲେ ।

ଦେବଦତ୍ତ ବୁଦ୍ଧଦେବଙ୍କୁ ଆଜନ୍ମ ଶତ୍ରୁ ରୂପେ ବିବେଚନା କରୁଥିଲେ । ସେ ଭାବୁଥିଲେ, ବୁଦ୍ଧଦେବଙ୍କ ଜୀବନର ବିନାଶ ଘଟାଇ ପାରିଲେ ତାଙ୍କ ଜୀବନପଥ ନିଷ୍କଣ୍ଟକ ହେବ । ତେଣୁ ସେ ତାଙ୍କ ପ୍ରାଣନାଶର ଗୋଟାକ ପରେ ଗୋଟାଏ ଷଡ଼ଯନ୍ତ୍ର କରିବାକୁ ଲାଗିଲେ ।

ଦିନେ ସେ ବୁଦ୍ଧଦେବଙ୍କୁ ପ୍ରଶ୍ନକଲେ, ଆପଣ ଅହିଂସା ଧର୍ମ ପ୍ରଚାର କରୁଛନ୍ତି । କିନ୍ତୁ, ମାଛମାଂସ ଭକ୍ଷଣ ପାଇଁ ନିଷେଧ କରୁ ନାହାନ୍ତି କାହିଁକି ?

ବୁଦ୍ଧଦେବ କହିଲେ, ମୁଁ ଅହିଂସା ପାଳନ କରିବାକୁ ଉପଦେଶ ଦେଇଥାଏ । କିନ୍ତୁ ଗରିବମାନେ ବେଳେବେଳେ ଭୋକ ଉପାସରେ ଦିନ କାଟନ୍ତି । ସେତେବେଳେ ଯାହାମିଳେ ଖାଇ ନିଅନ୍ତି । ତେଣୁ ସେମାନଙ୍କୁ ମାଛମାଂସ ଖାଇବା ପାଇଁ ମନାକରିବା ଅନୁଚିତ ହେବ । କେବଳ ବଞ୍ଚିବା ପାଇଁ ସେମାନେ ସେହି ଖାଦ୍ୟ ଭୋଜନ କରିଥାନ୍ତି । ପୁଣି ବୌଦ୍ଧ ଭିକ୍ଷୁମାନେ ଭିକ୍ଷାମାଗି ଚଳନ୍ତି । ଭିକ୍ଷାଦାତାମାନେ ଯାହା ଦିଅନ୍ତି, ଭିକ୍ଷୁମାନେ ତାହା ଗ୍ରହଣ କରିଥାନ୍ତି । ଭିକ୍ଷାଦାତାମାନେ ନିରାମିଷାଶୀ ହେବେ ବୋଲି ମୁଁ କିପରି କହିବି ?

ଏହାଶୁଣି ଦେବଦତ୍ତ ପୁଣି ପ୍ରଶ୍ନ କଲେ, ଯିଏ ଯାହା ଦେବ ତାହା ଗ୍ରହଣ କରିବା ବୌଦ୍ଧଭିକ୍ଷୁ ତଥା ଆପଣଙ୍କ ପକ୍ଷରେ କଣ ଉଚିତ ।

ବୁଦ୍ଧଦେବ କହିଲେ, ତାହାହିଁ ଭିକ୍ଷାର ଧର୍ମ ।

ଦେବଦତ୍ତ ଏହାପରେ ନୀରବରେ ଚାଲିଯାଇ ତାଙ୍କର ପରବର୍ତ୍ତୀ ଯୋଜନା ପ୍ରସ୍ତୁତ କଲେ ।

ବୁଦ୍ଧଦେବ ବୈଶାଳୀରୁ ଯାଇ 'ପାବ' ନାମକ ଏକ ସ୍ଥାନରେ ପହଞ୍ଚିଲେ । ଦେବଦତ୍ତ ସଙ୍ଗେ ସଙ୍ଗେ 'ପାବ' ଯାଇ ଚଣ୍ଡନାମକୁ ଏକ ଅସ୍ପୃଶ୍ୟ ଜାତିର ଲୋକକୁ ସାକ୍ଷାତ କଲେ ।

ଚଣ୍ଡ ବୌଦ୍ଧଧର୍ମ ଗ୍ରହଣ କରିଥିଲା । ସେ ନିଜଘରେ 'ଦେବଦତ୍ତ'ଙ୍କ ପରି ଜଣେ ଅତିଥିଙ୍କୁ ଦେଖି କୃତକୃତ୍ୟ ହେଲା ।

ଦେବଦତ୍ତ ଚଣ୍ଡ ଆଗରେ କହିବାକୁ ଲାଗିଲେ, ଦେଖ ଚଣ୍ଡ, ବୌଦ୍ଧଧର୍ମ ଏବେ ଛଳନା ଓ ମିଥ୍ୟାରେ ପୂରିଯାଇଛି ।

ବୁଦ୍ଧଦେବ ସବୁକଥା ସତକରି କହୁ ନାହାନ୍ତି । ସେ କହୁଛନ୍ତି, ସବୁ ମଣିଷ ସମାନ । ଯିଏଯାହା ଭିକ୍ଷାଦେବ ତାହା ସାଦରେ ଗ୍ରହଣ କରିବେ । କିନ୍ତୁ ଏଥିରେ ମଧ୍ୟ ଛଳନା ରହିଛି ।

ଚଣ୍ଡି ପ୍ରତିବାଦ କରି କହିଲା, ବୁଦ୍ଧ ସାକ୍ଷାତ ଭଗବାନ । ଭଗବାନ ବୁଦ୍ଧ ମିଥ୍ୟା କହନ୍ତି ନାହିଁ କି ଛଳନା କରନ୍ତି ନାହିଁ । ମୋର ଧର୍ମ କେବେହେଲେ କଳୁଷିତ ହେବନାହିଁ । ଆପଣ ସେପରି କହନ୍ତୁ ନାହିଁ ।

ଦେବଦତ୍ତ କହିଲେ, ଦେଖ ଚଣ୍ଡି, ମୁଁ ଯାହା କହୁଛି ତାହା ପରୀକ୍ଷା କରି ଦେଖାଯାଉ । ତୁ ବୁଦ୍ଧଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କରି ମାଂସ ରାନ୍ଧି ଖାଇବାକୁ ଦେ । ସେ ତାହା ଗ୍ରହଣ କଲେ ଜାଣିବ, ବୌଦ୍ଧଧର୍ମ ପବିତ୍ର ଅଛି ।

ଚଣ୍ଡି ସରଳ ପ୍ରକୃତିର ମଣିଷ ଥିଲା । ବୌଦ୍ଧଧର୍ମ ଓ ବୁଦ୍ଧଦେବଙ୍କ ଉପରେ ତାର ଅଗାଧ ବିଶ୍ୱାସ ଥିଲା । ସେ ଦେବଦତ୍ତଙ୍କ ଗୋପନ ଷଡଯନ୍ତ୍ର ବୁଝି ନପାରି ସରଳ ମନରେ ବୁଦ୍ଧଦେବଙ୍କୁ ନିମନ୍ତ୍ରଣ ଜଣାଇଲା ।

ଦେବଦତ୍ତ ଜାଣିଥିଲେ ଯେ, ବୁଦ୍ଧଦେବଙ୍କର ପେଟ ରୋଗ ବା ଜଳୋଦର ରୋଗ ରହିଛି । ମାଂସ ଖାଇଲେ ତାହା ବିଷରେ ପରିଣତ ହେବ । ସେ ମୃତ୍ୟୁ ମୁଖରେ ପଡ଼ିବେ । ଏହାଜାଣି ସେ ତାଙ୍କର ଶେଷ ଅସ୍ତ୍ର ପ୍ରୟୋଗ କରିଥିଲେ ।

ବୁଦ୍ଧଦେବ ହସି ହସି ଚଣ୍ଡିର ଆମନ୍ତ୍ରଣ ସ୍ୱୀକାର କଲେ । ବୁଦ୍ଧଦେବ ସଙ୍ଗେ ସଙ୍ଗେ ଜାଣିଗଲେ ଯେ, ତାଙ୍କର ମୃତ୍ୟୁ ସମୟ ଆସି ପହଞ୍ଚିଯାଇଛି । ସେ ନିଜର ପ୍ରିୟ ଶିଷ୍ୟମାନଙ୍କୁ ପ୍ରଶ୍ନମାନ

ସର୍ବାଙ୍କ ନିଜ ନିଜର ସନ୍ଦେହ ମୋଚନ କରିବାକୁ ଆଦେଶ ଦେଲେ । ପରେ ପ୍ରିୟତମ ଶିଷ୍ୟ ଆନନ୍ଦଙ୍କୁ ତାଙ୍କୁ ଡାକି କହିଲେ, ବର୍ତ୍ତମାନ ଠାରୁ ତୁମ୍ଭେ ନିଜେ ନିଜର ଜ୍ଞାନପ୍ରଦୀପ ଜାଳିନିଅ । ସେହି ଜ୍ଞାନ ପ୍ରଦୀପରେ ପରମ୍ପରକୁ ଆଲୋକିତ କର । ଅନ୍ୟ ଉପରେ ଆଉ ନିର୍ଭର କରିନାହିଁ । ସତ୍ୟକୁ ପ୍ରଦୀପବୋଲି ମଣ । ସତ୍ୟହିଁ ତୁମର ଆଶ୍ରୟ ହେଉ ।

ଯଥା ସମୟରେ ବୁଦ୍ଧଦେବ ଯାଇ ଚଣ୍ଡ ଗୃହରେ ପ୍ରବେଶ କଲେ । ଚଣ୍ଡ ବୁଦ୍ଧଦେବଙ୍କ ଉଦ୍ଦେଶ୍ୟରେ ଘରଦ୍ୱାର ସଫାସୁତୁରା କରି ରଖିଥିଲା । ତାଙ୍କର ଭୋଜନପାଇଁ ଆସନ ପ୍ରସ୍ତୁତ କଲା । ତାପରେ ତାଙ୍କୁ ମାଂସ ବାଢ଼ିଲାବେଳେ ବିବ୍ରତ ହୋଇ ପଡ଼ିଲା ।

ବୁଦ୍ଧଦେବ ହସିହସି କହିଲେ, ବ୍ୟସ୍ତ ହୁଅନାହିଁ । ଯାହା ତୁମେ ଖାଇବାପାଇଁ ରଖିଛ, ତାକୁହିଁ ବାଢ଼ିଦିଅ ।

ଚଣ୍ଡ ତାର କମ୍ପମାନ ହାତରେ ଋଦ୍ଧାମାଂସ ଆଣି ବୁଦ୍ଧଦେବଙ୍କର ଭିକ୍ଷା ପାତ୍ରରେ ଅଜାଡ଼ି ଦେଲା ।

ବୁଦ୍ଧଦେବ ନିର୍ବିକାର ଚିତ୍ତରେ ଚଣ୍ଡର ଋଦ୍ଧାମାଂସରୁ କିଛି ଖାଇଲେ । ଏହାପରେ ଚଣ୍ଡକୁ ଆଶୀର୍ବାଦ ଦେଇ ତାର ମଙ୍ଗଳ କାମନା କଲେ ।

ଦେବଦତ୍ତ ଲୁଚିରହି ଏସବୁ ଘଟଣା ଦେଖୁଥାନ୍ତି । ବର୍ତ୍ତମାନ ତାଙ୍କର ହୃଦବୋଧ ହେଲା, ବୁଦ୍ଧଦେବ ସାମାନ୍ୟ ମଣିଷ ନୁହନ୍ତି । ତାଙ୍କୁ ମାୟାମୋହ ଘୋଡ଼ାଇ ରଖିନାହିଁ । ତାଙ୍କ ଆଖିରେ ସମସ୍ତେ ସମାନ, ଆପଣାର । ଏହିପରି ଏକ ମହାନ୍ ପୁରୁଷଙ୍କୁ ଶତ୍ରୁ ମଣୁ-ଥିବାରୁ ଦେବଦତ୍ତ ଅନୁତାପ କଲେ ।

ବୁଦ୍ଧଦେବ ଜୀବନରେ କେବେହେଲେ ମାଂସ ଖାଇବାରେ ଅଭ୍ୟସ୍ତ ନଥିଲେ । ତାଙ୍କର ଅସୁସ୍ଥ ଶରୀରରେ ଏହି ମାଂସ ବିଷପରି କାମକଲା । ସେ ଯନ୍ତ୍ରଣାରେ ଅଧୀର ହୋଇ ଶଯ୍ୟାଶାୟୀ ହେଲେ ।

ବୁଦ୍ଧଦେବଙ୍କ ଅବସ୍ଥା ଦେଖି, ସରଳ ପ୍ରାଣ 'ଚଣ୍ଡ' ନିଜକୁ ମହା ଅପରାଧୀ ମନେକଲା । ସେ ବୁଦ୍ଧଦେବଙ୍କ ଶଯ୍ୟା ପାଖରେ ବସି ରହିଲା ।

ଏଣେ ଅନୁତପ୍ତ ଦେବଦତ୍ତ ମଧ୍ୟ ବୁଦ୍ଧଦେବଙ୍କ ଶଯ୍ୟା ପାଖରେ ବସି ରହିଲେ ।

ସମଗ୍ର ପରିବେଶ ନିସ୍ତବ୍ଧ ଥିଲା । ବୁଦ୍ଧଦେବ ଯନ୍ତ୍ରଣା ଯୋଗୁ ବ୍ୟତିବ୍ୟସ୍ତ ହେଉଥିଲେ । ସେ ଯେତେବେଳେ ଆଖି ଖୋଲିଲେ, ଦେଖିଲେ ଚଣ୍ଡ ଓ ଦେବଦତ୍ତ ତାଙ୍କ ପାଖରେ ବସି କାନ୍ଦୁଛନ୍ତି ।

ବୁଦ୍ଧଦେବ ସେ ଦୁହିଁଙ୍କୁ ସାନ୍ତ୍ୱନା ଦେଇ କହିଲେ, ମୋ ପାଇଁ ଦୁଃଖ କରନାହିଁ । ଆଜି ନହେଲେ କାଲି ମୋତେ ମୃତ୍ୟୁ ମୁଖରେ ପଡ଼ିବାକୁ ହୋଇଥାନ୍ତା । କିନ୍ତୁ ଏବେ ମୋର ନିର୍ବାଣ ପାଇଁ ତୁମେ ଦୁହେଁ ସାହାଯ୍ୟ କରିଥିବାରୁ ମୁଁ ତୁମ ପାଖରେ କୃତଜ୍ଞ ।

କରୁଣାମୟ ବୁଦ୍ଧଙ୍କ କଥାଶୁଣି ନିଷ୍ଠୁର ଦେବଦତ୍ତଙ୍କ ମନରେ ପରିବର୍ତ୍ତନ ଦେଖାଦେଲା । ସେ ବୁଦ୍ଧଦେବଙ୍କୁ ତାଙ୍କ ଚରଣ ଛୁଇଁବାକୁ ଅନୁମତି ମାଗିଲେ ।

ବୁଦ୍ଧଦେବ ଦେବଦତ୍ତଙ୍କ ମୁଣ୍ଡରେ ହାତରଖି କହିଲେ, ଯିଏ ମାନବ ଜାତିର କଲ୍ୟାଣ ପାଇଁ ନିଜ ବୁଦ୍ଧି ଖଟାଏ, ସେ ଆପେ ଆ ; ] ବୁ ? ପାଲଟିଯାଏ । ମୃତ୍ୟୁ ସେହି 'ବୁଦ୍ଧ'ର ବିନାଶ ଘଟାଇ

ପାରେ ନାହିଁ । ତୁମେ ବୈରଭାବର ବଶବର୍ତ୍ତୀ ହୋଇ ଯେଉଁ କାର୍ଯ୍ୟକଲ ସେଥିପାଇଁ ଅନୁତାପ କରୁଛ । ମୋର ମୃତ୍ୟୁ ତୁମ ଭିତରେ ଥିବା ସମସ୍ତ ମନ୍ଦ ଗୁଣର ମୃତ୍ୟୁ ଘଟାଉ । ମୁଁ ଏବେ ବିଦାୟ ନେବି । ଶୁଣ ଦେବଦତ୍ତ! ତୁମେ ହିଁ ମୋ ସ୍ଥାନ ପୂରଣ କରିବ । ଆନନ୍ଦ ଓ ନନ୍ଦ ଇତ୍ୟାଦି ରାଜଭୋଗ ଛାଡ଼ି ସଂଘରେ ଯୋଗ ଦେଇଛନ୍ତି । ମୁଁ ଚାହେଁ ତୁମେ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରି ସଂଘରେ ଯୋଗଦେବ ଓ ବିଶ୍ୱକଲ୍ୟାଣ ଉଦ୍ଦେଶ୍ୟରେ କାର୍ଯ୍ୟ କରିବ ।

ବୁଦ୍ଧଦେବଙ୍କ ଅନ୍ତିମବାଣୀ ଶୁଣି ଦେବଦତ୍ତଙ୍କ ଶରୀରରେ ଦିବ୍ୟ ଆନନ୍ଦ ଦେଖାଦେଲା । ତାଙ୍କର ଚକ୍ଷୁ ମୁଦ୍ରି ହୋଇଗଲା । ସେ ଧୀରେ ଧୀରେ ଗାଇବାକୁ ଲାଗିଲେ—

"ବୁଦ୍ଧଂ ଶରଣଂ ଗଚ୍ଛାମି,
ସଙ୍ଘଂ ଶରଣଂ ଗଚ୍ଛାମି,
ଧର୍ମଂ ଶରଣଂ ଗଚ୍ଛାମି ।"

ଏହାପରେ ସେ ବୁଦ୍ଧଦେବଙ୍କୁ ପ୍ରଣାମ କଲେ । ସେ ରାଜଭୋଗ ଛାଡ଼ି ସଂଘରେ ଯୋଗ ଦେଲେ ।

ଆଶ୍ଚର୍ଯ୍ୟର ବିଷୟ, ଏକଦା ଶତ୍ରୁଭାବାପନ୍ନ 'ଦେବଦତ୍ତ' ବୌଦ୍ଧ ସଂଘର ପରମ ମିତ୍ର ପାଲଟି ଗଲେ । ଯେଉଁ ଦେବଦତ୍ତଙ୍କ ପାପକର୍ମ ଯୋଗୁ ଭଗବାନ ବୁଦ୍ଧ ଧରାଧାମରୁ ବିଦାୟ ନେଲେ, ସେହି କ୍ରୂର ଚରିତ୍ର ଭିତରୁ ଦିବ୍ୟ ଚେତନା ଜନ୍ମନେଲା । ତାଙ୍କର ସ୍ୱଭାବ ସଂପୂର୍ଣ୍ଣ ରୂପେ ବଦଳି ଗଲା ।

ସେଦିନ ଥିଲା ବୈଶାଖ ପୂର୍ଣ୍ଣିମା ଦିନ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ । ଆଉ ଏକ ବୈଶାଖ ପୂର୍ଣ୍ଣିମାରେ ସେ ସିଦ୍ଧିଲାଭ

କରିଥିଲେ । ସେ ଦିନର ବୈଶାଖ ପୂର୍ଣ୍ଣିମୀ ତିଥିରେ ସେ ନିର୍ବାଣ ଲାଭ କଲେ ।

## ବୁଦ୍ଧ ଅବତାର 'ଶ୍ରୀଜଗନ୍ନାଥ'

ବୃଦ୍ଧଦେବଙ୍କ ଦ୍ୱାରା ପ୍ରବର୍ତ୍ତିତ ବୌଦ୍ଧଧର୍ମ ଉତ୍କଳ ଖଣ୍ଡରେ ମଧ୍ୟ ପ୍ରସିଦ୍ଧି ଲାଭ କରିଥିଲା ।

ବୁଦ୍ଧଦେବଙ୍କ ଜୀବିତା ବସ୍ଥାରେ ଓ ପରେ ମଧ୍ୟ ଓଡ଼ିଶାରେ ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର ଘଟିଥିଲା ।

ବୌଦ୍ଧ ଧର୍ମର 'ବିନୟ ପୀଠକ' ଗ୍ରନ୍ଥରେ ଉଲ୍ଲେଖ ଅଛି, ବୁଦ୍ଧଦେବ 'ଉରୁବେଳ' ଅରଣ୍ୟରେ ବୁଦ୍ଧିତ୍ୱ ଲାଭ କରିବା ପରେ ସାତ ସପ୍ତାହ ପର୍ଯ୍ୟନ୍ତ ଉପବାସ ରହିଥିଲେ । ସେହି ସମୟରେ ଓଡ଼ିଶାର 'ତପସୁ' ଓ 'ଭଲ୍ଲିକ' ନାମରେ ଦୁଇଜଣ ସାଧବ ବୃଦ୍ଧଦେବଙ୍କୁ ପିଠା ଖାଇବାକୁ ଦେଇଥିଲେ । ଏମାନେ ସେହି ସମୟରେ ବାଣିଜ୍ୟ ପାଇଁ ମଜ୍ଝିମ ବା ମଧ୍ୟପ୍ରଦେଶକୁ ଯାତ୍ରା କରୁଥିଲେ । ଏହି ଦୁଇ ସାଧବ ବୁଦ୍ଧଦେବଙ୍କ ଶିଷ୍ୟହୋଇ ଉତ୍କଳକୁ ଆସି ବିହାର ନିର୍ମାଣ କରିଥିଲେ ଓ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ପାଇଁ କାର୍ଯ୍ୟ କରିଥିଲେ ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକ କଳିଙ୍ଗ ବିଜୟ କରିବାପରେ ବୌଦ୍ଧଧର୍ମ ଗ୍ରହଣ କରି ଚଣ୍ଡାଶୋକରୁ ଧର୍ମାଶୋକ ପାଲଟି ଯାଇଥିଲେ । ଭୁବନେଶ୍ୱର ନିକଟସ୍ଥ ଧଉଳି-ଗିରିରେ ଥିବା ଶିଳାଲେଖାରୁ ଏହା ଜଣାଯାଏ ।

ବୌଦ୍ଧଧର୍ମ ନାନା ସଂପ୍ରଦାୟରେ ବିଭକ୍ତ ହେଲା । ବୌଦ୍ଧ ଧର୍ମର ତନ୍ତ୍ରଯାନରୁ ସୃଷ୍ଟି ହୋଇଥିବା 'ବଜ୍ରଯାନ'ର ସ୍ରଷ୍ଟା

ହେଉଛନ୍ତି ସମ୍ବଲପୁରର ରଜା ଇନ୍ଦ୍ରଭୂତି । ସେ ଅଷ୍ଟମ ଶତାବ୍ଦୀର ରାଜାଥିଲେ । ତାଙ୍କ ଦ୍ୱାରା ରଚିତ 'ଜ୍ଞାନସିଦ୍ଧି' ଗ୍ରନ୍ଥ, ବୌଦ୍ଧ ବଜ୍ରଯାନ ସଂପ୍ରଦାୟର ଅମୂଲ୍ୟ ସଂପଦ । ସେ ବୁଦ୍ଧଦେବଙ୍କୁ ଜଗନ୍ନାଥ ନାମରେ ଖ୍ୟାତ କଲେ ।

ପରିଶେଷରେ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କର ନବମ ଅବତାର ବୋଲି ସ୍ୱୀକାର କରାଗଲା । ବିଷ୍ଣୁ ପୁରାଣରେ ଦଶ ଅବତାର ବର୍ଣ୍ଣନା ଭିତରେ, ନବମ ଅବତାର ବୁଦ୍ଧଦେବଙ୍କର ଜୀବନୀ ଓ ଜୀବନ ସ୍ଥାନ ଲାଭ କଲା ।

ଓଡ଼ିଶାର ଶ୍ରୀକ୍ଷେତ୍ରରେ ଜଗନ୍ନାଥ ମନ୍ଦିର ସିଂହଦ୍ୱାରରେ ବିଷ୍ଣୁଙ୍କର ଦଶାବତାର ଚିତ୍ର ରହିଛି । ତହିଁରେ ବୁଦ୍ଧ ଅବତାର ପରିବର୍ତ୍ତେ ନବମ ଅବତାର ରୂପେ ଜଗନ୍ନାଥଙ୍କ ଚିତ୍ର କରାଗଲା । ଏତଦ୍ୱାରା ଦର୍ଶାଇ ଦିଆଗଲା ଯେ, ଜଗନ୍ନାଥ ଓ ବୁଦ୍ଧଦେବ ଅଭିନ୍ନ । ଜଗନ୍ନାଥ ବୁଦ୍ଧ ଭାବରେ ଅବତୀର୍ଣ୍ଣ ।

## ବୁଦ୍ଧଦେବଙ୍କ ଦୈନନ୍ଦିନ ଜୀବନ ଯାତ୍ରା

ବୌଦ୍ଧ ଶାସ୍ତ୍ରରୁ ବୁଦ୍ଧଙ୍କର ଦୈନନ୍ଦିନ ଜୀବନଯାତ୍ରା ସଂପର୍କରେ ନିମ୍ନଲିଖିତ ବିବରଣୀ ମିଳେ ।

'ବୁଦ୍ଧଦେବ ବଡ଼ଭୋରରୁ ଶଯ୍ୟା ତ୍ୟାଗ କରୁଥିଲେ । ସାଧାରଣ କର୍ମପରେ ଧ୍ୟାନରେ ବସୁଥିଲେ ଓ ଧ୍ୟାନପରେ ଭିକ୍ଷାପାତ୍ର ନିଜ ହସ୍ତରେ ଧରି ବାହାରି ପଡ଼ୁଥିଲେ । ଯେ କୌଣସି ବ୍ୟକ୍ତିଙ୍କ ହାତରୁ ଖାଦ୍ୟ ଗ୍ରହଣ କରି ସେଠାରେ ସେ ଧର୍ମ ଉପଦେଶ ଦେଉଥିଲେ । ସେଠାରୁ ଆଶ୍ରମକୁ ଫେରି ଆସି ଆଶ୍ରମବାସୀଙ୍କୁ ସେମାନଙ୍କ ଭୋଜନ ଓ ଶାରୀରିକ କୁଶଳତା ବିଷୟ ପଚାରି

ବୁଝୁଥିଲେ । ତାପରେ ଶିଷ୍ୟମାନଙ୍କୁ ଧ୍ୟାନ କରିବାପାଇଁ ଉପଦେଶ ଦେଇ ନିଜେ ଧ୍ୟାନମଗ୍ନ ରହୁଥିଲେ ।

ଅପରାହ୍ଣରେ ସେ ସର୍ବସାଧାରଣଙ୍କୁ ଧର୍ମ ଉପଦେଶ ଦେଉଥିଲେ ।

ସଂଧ୍ୟାରେ ଧ୍ୟାନପରେ ଭିକ୍ଷୁମାନଙ୍କୁ ଧର୍ମ ଉପଦେଶ ପ୍ରଦାନ କରିବାପରେ ନିଜେ ଧ୍ୟାନରେ ବସି ଯାଉଥିଲେ ।

ବୁଦ୍ଧଦେବଙ୍କ ଜୀବନ ଯାତ୍ରା ସଂପର୍କରେ ଜଣେ ଇଂରେଜ ଆଲୋଚକ କହନ୍ତି, ଯେଉଁ ସମୟରେ ତାଙ୍କ ଖ୍ୟାତି ଉଚ୍ଚତମ ସୋପାନକୁ ଚଢ଼ିଅଛି ପାରିଥିଲା ଏବଂ ଯାହାଙ୍କ ଆଗରେ ରାଜା ମହାରାଜାମାନେ କରଯୋଡ଼ି ଛିଡ଼ା ହେଉଥିଲେ ଠିକ୍ ସେହିକବେଳେ ସେ ଭିକ୍ଷାପାତ୍ର ଧରି ଚହ୍ଲା ଅଚହ୍ଲା ଗୃହସ୍ଥଙ୍କ ଘର ଆଗରେ ଛିଡ଼ା ହେଉଥିଲେ ।

ପୃଥିବୀର ଶ୍ରେଷ୍ଠ ମହାପୁରୁଷଙ୍କ ଜୀବନ ଏହିପରି ଭାବରେ ଅତିବାହିତ ହେଉଥିଲା ।

## ସଂକ୍ଷେପରେ ବୌଦ୍ଧ ଧର୍ମ

ଗୌତମ ବୁଦ୍ଧଙ୍କ ଦ୍ୱାରା ପ୍ରତିଷ୍ଠିତ ଧର୍ମକୁ ବୌଦ୍ଧଧର୍ମ କୁହାଯାଏ । ନୈତିକ ଓ ଆଦର୍ଶ ଜୀବନଯାପନ ପାଇଁ ଏହି ଧର୍ମରେ ସଙ୍କେତ ରହିଛି ।

ଦୁଃଖପୂର୍ଣ୍ଣ ଜୀବନରୁ ମୁକ୍ତି ପାଇବା ପାଇଁ ଚାରୋଟି 'ଆର୍ଯ୍ୟ-ସତ୍ୟ' ବିଚାର କରାଯାଇଛି । ସେଗୁଡ଼ିକ ହେଲା—

(୧) ଦୁଃଖ, (୨) ଦୁଃଖର କାରଣ, (୩) ଦୁଃଖ ନିରୋଧ ଓ (୪) ଦୁଃଖ ନିରୋଧର ମାର୍ଗ ।

ବୁଦ୍ଧ କହିଥିଲେ, 'କାମନା' ହିଁ ସକଳ ଦୁଃଖର କାରଣ ଅଟେ । କାମନାର ବିନାଶରେ ଦୁଃଖର ବିନାଶ ଘଟେ । ଏହି କାମନା ହିଁ ପୁନର୍ଜନ୍ମର କାରଣ । କାମନାରୁ ମୁକ୍ତି ପାଇବା ପାଇଁ ସେ 'ଅଷ୍ଟାଙ୍ଗ ମାର୍ଗ' କଥା କହିଥିଲେ—

(୧) ସତ୍ ବିଶ୍ୱାସ, (୨) ସତ୍ ଆକାଂକ୍ଷା, (୩) ସତ୍‌ବାକ୍ୟ, (୪) ସତ୍ ସ୍ୱଭାବ, (୫) ସତ୍ ଜୀବନ ଯାତ୍ରା, (୬) ସତ୍ ଚେଷ୍ଟା, (୭) ସତ୍ ଚିନ୍ତା ଓ (୮) ସତ୍ ସାଧନା ।

ସତ୍‌ମାର୍ଗ ସତ୍ ବା ସତ୍ୟ ଉପରେ ପ୍ରତିଷ୍ଠିତ ।

ବୌଦ୍ଧ ଧର୍ମାବଲମ୍ବୀମାନଙ୍କୁ ସେ ଏକ ନୈତିକ ମାର୍ଗ ଅନୁସରଣ କରିବାପାଇଁ କହିଥିଲେ । ତାହା ହେଲା—

(୧) ଜୀବ ହିଂସା ନ କରିବା, (୨) ସତ୍ୟ କହିବା, (୩) ବ୍ରହ୍ମଚର୍ଯ୍ୟ ପାଳନ କରିବା, (୪) ଆସକ୍ତି ତ୍ୟାଗ କରିବା, (୫) ଚୋରି ନ କରିବା, (୬) ସଂପଦ ତ୍ୟାଗ କରିବା, (୭) ପରନିନ୍ଦା ନ କରିବା ।

ଏହି ନୈତିକ ଆଚରଣ ବିଧିମାନ ଚଳିଲେ ମନୁଷ୍ୟ ସୁଖୀ ହୋଇ ପାରିବ ବୋଲି ବୁଦ୍ଧଦେବ ଘୋଷଣା କରିଥିଲେ ।

ବୁଦ୍ଧଦେବ 'ଅହିଂସା ପରମ ଧର୍ମ' ଏହି ମନ୍ତ୍ର ପ୍ରଚାର କରିଥିଲେ ।

## ବୌଦ୍ଧ ଧର୍ମର ପବିତ୍ର ଗ୍ରନ୍ଥ

ବୌଦ୍ଧ ଧର୍ମର ପବିତ୍ର ଗ୍ରନ୍ଥର ନାମ ତ୍ରିପିଟକ । ଏହା ତିନି ଭାଗରେ ବିଭକ୍ତ । ତାର ନାମ ହେଲା—ବିନୟ ପିଟକ, ସୂତ୍ର ପିଟକ ଓ ଅଭିଧର୍ମ ପିଟକ ।

ନିପଟକରେ ବୌଦ୍ଧ ଧର୍ମାବଲମ୍ବୀମାନଙ୍କର କର୍ତ୍ତବ୍ୟ, ବୁଦ୍ଧ-ଦେବଙ୍କର ଧର୍ମ ଉପଦେଶ ଓ ବୌଦ୍ଧ ଧର୍ମ ଦର୍ଶନ ରହିଛି ।

## ବୌଦ୍ଧ ଧର୍ମର ପ୍ରଚାର ଓ ପ୍ରସାର

ବୁଦ୍ଧଦେବଙ୍କ ସମୟରେ ଏ ଧର୍ମ ସମଗ୍ର ଭାରତ ବର୍ଷରେ ପ୍ରଚାର ଲାଭ କରିଥିଲା । କିନ୍ତୁ ତାଙ୍କର ତିରୋଧାନ ପରେ ରାଜା ମହାରାଜାଙ୍କ ସାହାଯ୍ୟରେ ସିଂହଳ, ବ୍ରହ୍ମଦେଶ, ଚୀନ ପ୍ରଭୃତି ଲାଭ କରିବା ଏବେ ଏହା ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଧର୍ମରୂପେ ପରିଗଣିତ ।

## ଭାରତରେ ବୌଦ୍ଧଧର୍ମ ଲୋପ ପାଇବା କାରଣ

ଭାରତ ବର୍ଷରେ ବୌଦ୍ଧଧର୍ମ ଉତ୍ପତ୍ତି ଲାଭ କରିଥିଲେ ହେଁ, ହିନ୍ଦୁଧର୍ମ ପରି ଏହା ରାଜା ମହାରାଜମାନଙ୍କର ସାହାଯ୍ୟ ଲାଭ ନକରି ପ୍ରଚାର ହୋଇ ପାରିଲା ନାହିଁ ।

ପୁଣି ଏହା କ୍ରମେ ହୀନଯାନ ଓ ମହାଯାନ ନାମରେ ଦୁଇ ଭାଗରେ ବିଭକ୍ତ ହୋଇ ଦୁର୍ବଳ ହେଲା । ପୁଣି କାଳକ୍ରମେ ଏହାର ଭିତରେ ତନ୍ତ୍ର ବିଦ୍ୟା ଯୋଡ଼ି ହେବାରୁ ପୂର୍ବର ପବିତ୍ରତା ହରାଇ ବସିଲା ।

ସପ୍ତମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟ ହିନ୍ଦୁଧର୍ମରେ ସଂସ୍କାର ଆଣି ତାକୁ ସୁଦୃଢ଼ କଲେ । ତାଙ୍କର ଯୁକ୍ତିରେ ବୌଦ୍ଧ ପଣ୍ଡିତମାନେ ପରାସ୍ତ ହୋଇ ହିନ୍ଦୁଧର୍ମର ଶ୍ରେଷ୍ଠତାକୁ ସ୍ୱୀକାର କଲେ । ଶେଷରେ ଏହା ହିନ୍ଦୁଧର୍ମ ସଙ୍ଗେ ସାମିଲ ହୋଇ ଲୋପ ପାଇଲା ।

